# ସମାଲୋଚନା ବିଚିତ୍ର

ଅଧ୍ୟାପିକା ଲାବଣ୍ୟ ନାୟକ

# ସମାଲୋଚନା-ବିଚିତ୍ରା

ଶ୍ରୀମତୀ ଲାବଣ୍ୟ ନାୟକ
ଅଧ୍ୟାପିକା, ଓଡ଼ିଆ ବିଭାଗ,
ସରକାରୀ ମହିଳା କଲେଜ, ବ୍ରହ୍ମପୁର ।

ପୁସ୍ତକ ଭଣ୍ଡାର
ବ୍ରହ୍ମପୁର-୧

ପ୍ରକାଶକ :
ଶ୍ରୀ ନିତ୍ୟାନନ୍ଦ ଦାଶ
ପୁସ୍ତକ ଭଣ୍ଡାର
ବ୍ରହ୍ମପୁର

ପ୍ରଥମ ମୁଦ୍ରଣ :
ମହାବିଷୁବ ସଂକ୍ରାନ୍ତି : ୧୯୭୨
ନିଉଷ୍ଟୋର୍ସ ପ୍ରେସ୍, ବ୍ରହ୍ମପୁର, ଗଞ୍ଜାମ.
ମୂଲ୍ୟ :
ବନ୍ଧା
ଅବନ୍ଧା Rs 5/00 P
ପ୍ରଚ୍ଛଦ .
ଶ୍ରୀ ସୀତାକାନ୍ତ ମହାପାତ୍ର

*SMT. LABANYA NAYAK,* M. A.

*SAMALOCHANA BICHITRA*

Publisher
*Sri Nityananda Das*
**PUSTAK BHANDAR**
Berhampur-1

1St. Edition
April, 1972
New Stores Press
Berhampur-2

PRICE ;
Bound: Rs
Unbound: Rs 5/00 P.

# ଭୂମିକା

ଓଡ଼ିଆ ସାହିତ୍ୟ ଯେତେ ପ୍ରାଚୀନ ଏବଂ ଏହାର ସୃଷ୍ଟି ଯେପରି ବୈଚିତ୍ର୍ୟ ପୂର୍ଣ୍ଣ, ତାହାର ଚର୍ଚ୍ଚା ବା ସମୀକ୍ଷା ସେତେ ବ୍ୟାପକ ଓ ଗମ୍ଭୀର ନୁହେଁ । ନୂତନ ଆଭିମୁଖ୍ୟ ନେଇ ସାହିତ୍ୟର ନିହିତ ମୂଲ୍ୟ ଅନୁଶୀଳନ କରାଗଲେ ଆମର ଜାତୀୟ ସାହିତ୍ୟକୁ ସମଗ୍ର ଗୌରବରେ ଉପଲବ୍ଧି କରିବା ସମ୍ଭବ ହୋଇ ପାରିବ । କେବଳ ଗତାନୁଗତିକ ଧାରାରେ ସାହିତ୍ୟର ସମାଲୋଚନା ହେଉଥିଲେ, ସାହିତ୍ୟର ବିବିଧ ବିଭାଗ ପ୍ରତି ସଚେତନତା ସୃଷ୍ଟି ହେବ ନାହିଁ କିମ୍ବା ଆମେ ସୂକ୍ଷ୍ମାତିସୂକ୍ଷ୍ମ ସାହିତ୍ୟିକ ବିଷୟ ଆଡ଼କୁ ଆଗ୍ରହାନ୍ୱିତ ହେବୁ ନାହିଁ । ଏହାର ନିରାକରଣ ପାଇଁ ଧାରାବାହିକ ଉଦ୍ୟମ ଲୋଡ଼ା । ପ୍ରତ୍ୟେକ ସାହିତ୍ୟ ବିଳାସୀଙ୍କର ଏହା ଏକ ଜାତୀୟ କର୍ତ୍ତବ୍ୟ ।

ଆମ ସମାଲୋଚନା ସାହିତ୍ୟକୁ ପୁରୁଷ ଲେଖକ ତୁଳନାରେ ନାରୀ ଲେଖିକାର ଅବଦାନ ଖୁବ୍ କ୍ଷୀଣ । କିନ୍ତୁ ପୁରୁଷ ଓ ନାରୀଙ୍କ ଦୃଷ୍ଟିକୋଣରେ ବ୍ୟବଧାନ ବେଶୀ । ତେଣୁ ସାହିତ୍ୟର ମୂଲ୍ୟବୋଧ କଳନା ବେଳେ ଗୋଟିଏ ଦୃଷ୍ଟିର ପ୍ରଭାବ ବା ଅନ୍ୱେଷଣକୁ ହାତ ପାଣ୍ଠି ରୂପେ ମାନିନେଲେ ଯଥେଷ୍ଟ ହେବ ନାହିଁ । ବିବିଧ ଦୃଷ୍ଟି ଓ ବିଚାରଧାରାର ଉପପାଦ୍ୟକୁ ବୋଧଗତ କଲେ ଯାଇ ସୃଷ୍ଟିର ଯଥାର୍ଥ ତଉଲ ହୋଇ ପାରିବ ।

ସମକାଳୀନ ଓଡ଼ିଆ ସମାଲୋଚନା ସାହିତ୍ୟକୁ ନାରୀ-ମନନ କଂଚାତ୍ର ପରିପୁଷ୍ଟ କଲେ ଉଭୟ ଦୃଷ୍ଟିର ଦିଗରୁ ସାହିତ୍ୟର ସ୍ଥିତି ଓ ଗତି ନିର୍ଭୁଲ ଭାବେ କଳନା କରାଯାଇ ପାରିବ । ସେହି ସାଧୁ ଉଦ୍ଦେଶ୍ୟ ସାଧନ ଲକ୍ଷ୍ୟରେ ମୋର ଏହି ଗ୍ରନ୍ଥ, ଏକ ଯୋଗ ମାତ୍ର ।

ଏଥିରେ ନୂତନ ଆଭିମୁଖ୍ୟ ନେଇ ପରିକଳ୍ପିତ ସାତୋଟି ସାହିତ୍ୟିକ-ଚର୍ଚ୍ଚାମୂଳକ ନିବନ୍ଧ ଗ୍ରନ୍ଥସ୍ଥ ହୋଇଛି । ତହିଁରୁ କେତୋଟି ପୂର୍ବରୁ ପତ୍ର-ପତ୍ରିକାରେ ସ୍ଥାନ ପାଇଥିଲା । ସେଥିପାଇଁ ସେହି ପତ୍ର-ପତ୍ରିକାର ସମ୍ପାଦକମାନଙ୍କ ନିକଟରେ ମୁଁ ଋଣୀ ।

ଏହାକୁ ଗ୍ରନ୍ଥାକାରରେ ପ୍ରକାଶ ଆଲୋକ ଦେଇଥିବାରୁ ପୁସ୍ତକ ଭଣ୍ଡାରର ସତ୍ତ୍ୱାଧିକାରୀ ଶ୍ରୀ ନିତ୍ୟାନନ୍ଦ ଦାଶ ମହାଶୟ ଓ ନିଉଷ୍ଟୋର୍ସ ପ୍ରେସର କର୍ମଚାରୀ ମାନଙ୍କୁ ସାଧୁବାଦ ଜଣାଉଛି । ଶିଳ୍ପୀ ଶ୍ରୀଯୁକ୍ତ ସୀତାକାନ୍ତ ମହାପାତ୍ରଙ୍କର ଅଙ୍କିତ ପରିପାଟୀରେ ଏହାର ପ୍ରଚ୍ଛଦ ନିର୍ମିତ । ତାଙ୍କୁ ଧନ୍ୟବାଦ ଜଣାଉଛି ।

ଏହା କଳ୍ପିତ ଲକ୍ଷ୍ୟ-ସାଧନ କରି ଆମର ସାହିତ୍ୟିକ ଚାହିଦା ପୂରଣ କରିପାରିଲେ କୃତାର୍ଥ ହେବି । ଇତି ।

ଲାବଣ୍ୟ ନାୟକ

ସାରସ୍ୱତ ନିଳୟ
ମହାବିଷୁବ ସଂକ୍ରାନ୍ତି, ୧୯୭୨
ବ୍ରହ୍ମପୁର, ଗଞ୍ଜାମ

## ପ୍ରକାଶକଙ୍କ ବକ୍ତବ୍ୟ

ସୃଷ୍ଟି ତୁଳନାରେ ସମାଲୋଚନା ସାହିତ୍ୟ ସେତେ ବିପୁଳ ନୁହେଁ । ପୁଣି ପୁରୁଷ ଲେଖକ ସମାଲୋଚନା ସାହିତ୍ୟକୁ ଯେପରି ପରିପୁଷ୍ଟ କରିଛନ୍ତି ନାରୀ ଲେଖକ ସେପରି କରିନାହାନ୍ତି । ଓଡ଼ିଆ ସମାଲୋଚନା ସାହିତ୍ୟରେ ନାରୀ-ଦୃଷ୍ଟି ଓ ଅନୁଧ୍ୟାନର କ୍ଷୀଣତା ଅନୁଭୂତ ହେଉଥିବାରୁ ସାହିତ୍ୟର ବିଶାଳତର ମୂଲ୍ୟାୟନରେ ଅଭାବ ରହିଯାଉଛି । ସାହିତ୍ୟକୁ ଯଥାର୍ଥ ରୂପେ ବୁଝିବା ଓ ମୂଲ୍ୟାୟନ କରିବା ଏକ ରୁଚିଗତ ବ୍ୟାପାର । ଏଯାବତ୍ ବିପୁଳଭାବେ ପୁରୁଷ ଦୃଷ୍ଟିରୁ ସାହିତ୍ୟକୁ ହୃଦୟଙ୍ଗମ କରି ମୂଲ୍ୟାୟନ କରାଯାଇଛି । କିନ୍ତୁ ନାରୀ-ପୁରୁଷ ଉଭୟ ଦୃଷ୍ଟିର ମୀମାଂସାକୁ ହିସାବକୁ ନେଇ ସାହିତ୍ୟର ଗତି ଓ କାନ୍ତି କଳନା କରାଗଲେ, ଆମେ ଯାଥାର୍ଥଭାବେ ଆପଣାର ସାରସ୍ୱତ ଅବଦାନକୁ ଚିହ୍ନି ପାରିବୁ ।

ସେହି ଆଭିମୁଖ୍ୟ ନେଇ ଅଧ୍ୟାପିକା ଶ୍ରୀମତୀ ଲାବଣ୍ୟ ନାୟକ ଓଡ଼ିଆ ସମାଲୋଚନା ସାହିତ୍ୟର ଗତି ଧାରାରେ ପରିବର୍ତ୍ତନ ପାଇଁ ପ୍ରୟାସୀ ହୋଇଛନ୍ତି । ସେ ସାଂପ୍ରତିକ ସମାଲୋଚନା ସାହିତ୍ୟ କ୍ଷେତ୍ରରେ ସୁପରିଚିତା ଓ ପତ୍ର ପତ୍ରିକା ମାଧ୍ୟମରେ ଆପଣାର ନୂତନ ଆଭିମୁଖ୍ୟ ପାଇଁ ପ୍ରତିଷ୍ଠିତା । ତାଙ୍କର ସମାଲୋଚନାର ସ୍ୱର ଗତାନୁଗତିକତାର ବିରୋଧୀ ଏବଂ ସର୍ଜନଶୀଳତାରେ ବିଶ୍ୱାସୀ ।

ଆମର ପ୍ରତିଷ୍ଠାନ ଅଧ୍ୟାପିକା ଶ୍ରୀମତୀ ନାୟକଙ୍କ 'ସମାଲୋଚନା ବିଚିତ୍ରା' ଗ୍ରନ୍ଥ ପ୍ରକାଶ କରିବାରେ ଆନନ୍ଦିତ ହୋଇଛି । ଆଭିମୁଖ୍ୟର ଅଭିନବତାକୁ ଗୌରବ ଦେଇ, ସାଂପ୍ରତିକ ସମାଲୋଚନା ସାହିତ୍ୟକୁ ନାରୀ ମନନର ଅଭିନବ ଅବଦାନ ହିସାବରେ ଏହାର ପ୍ରକାଶ ଯୋଗୁଁ ଆମେ ପ୍ରକାଶନ ଜଗତରେ ଏକ ନୂତନ ପଦକ୍ଷେପ ନେଇଛୁ । ଆମର ଉଦ୍ୟୋଗରେ ଅଧ୍ୟାପିକା ଶ୍ରୀମତୀ ନାୟକଙ୍କର ସହଯୋଗ ପାଇଁ ଆମେ କୃତଜ୍ଞ ।

ମହାବିଷୁବ ସଂକ୍ରାନ୍ତି, ୧୯୭୨
ବ୍ରହ୍ମପୁର

ନିତ୍ୟାନନ୍ଦ ଦାସ

# ସୂଚୀ

ଓଡ଼ିଆ ଜାତିର ସାହିତ୍ୟ ଓ ସଂସ୍କୃତିର
ଜୀବନ-ଦେବତା ଶ୍ରୀଶ୍ରୀଶ୍ରୀ ଜଗନ୍ନାଥଙ୍କର
ପାଦପଦ୍ମରେ ଭକ୍ତିପୂତ ନବେଦନ
ସ୍ୱରୂପ ଏହି ଗ୍ରନ୍ଥ ସମର୍ପିତ ହେଲ୍ ।

ଲବଣୀ

## କବିଙ୍କ ଦୃଷ୍ଟିରେ ଶିଶୁ

କବି-ଦୃଷ୍ଟିରେ ଶିଶୁ ବିଚିତ୍ର ମୂର୍ତ୍ତିମାନରେ ଶୋଭିତ। ଲାବଣ୍ୟ ଲଳିତ ଆନନରେ ଅଭିରାମ। ସ୍ୱର୍ଗ ତା'ର ଅଧିଷ୍ଠାନ କ୍ଷେତ୍ର। ସେ ଦେବତା; କିନ୍ତୁ ମର୍ତ୍ତ୍ୟ ତା'ର ବିହାର ଭୂମି (୧)। ମର୍ତ୍ତ୍ୟରେ ଏ ଦେବୋପମ ସନ୍ତତି ଯେଉଁ କୋଳ ମଣ୍ଡନ କରେ, ହର୍ଷ ଉଚ୍ଛ୍ୱସିତ ଆବେଗ ଧ୍ୱନି ଯେଉଁଠି ବିଚରଣ କରେ, ସେ ହୁଏ ମୈତ୍ରୀର ଶ୍ରୀକ୍ଷେତ୍ର। ସେଇ ଅଳକାପୁରୀର ନନ୍ଦନବନ ଶାନ୍ତଶୋଭାର ନିକେତନରେ ପରିଣତ ହୁଏ (୨)। ପୁଂସନାମକ ପ୍ରେମ ଓ ଯୋଷାନାମ୍ନୀ ପ୍ରୀତିର ଯୁଗ୍ମ ଜୀବନର ସୁକୁମାର ଫଳଟିଏ ହିଁ ସୁତନାମକ ସୁଖ (୩)। ଶିଶୁର ଆତ୍ମାରେ ଦେବତ୍ୱ ଉପଲବ୍ଧି କରି କବି ଅନେକ ସ୍ଥଳରେ ବିସ୍ମୟବିମୁଗ୍ଧ ହୋଇ ପଡ଼ିଛି। "ନବଜାତ ଶିଶୁ ଦର୍ଶନ" (୪) ରେ କବି ମନରେ ସେଇ ବିସ୍ମୟ ଅନୁଭବ ଉଚ୍ଚାରିତ। ନିଖିଳ ଜନନୀ ଏବଂ ବ୍ରହ୍ମାଣ୍ଡ ଈଶ୍ୱର ହିଁ ସକଳ ଶିଶୁସୃଷ୍ଟିର ସ୍ରଷ୍ଟା। ସେମାନଙ୍କର ପ୍ରେମ-କ୍ରୋଡ଼ରେ ପ୍ରେମ

---

୧। "କେଉଁ ଫୁଲ କୁସୁମରୁ ଲାବଣ୍ୟ ନିଗାଡ଼ି/କେ ବୋଳିଛି ଶିଶୁର ଆନନେ
ଆସିଛି ଦେବତା କେଉଁ ସ୍ୱର୍ଗରାଜ୍ୟ ଛାଡ଼ି/ଭ୍ରମିବାକୁ ଏ ମର ଭୁବନେ।"
(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

୨। ଯା' କୋଳେ ବାଳକ ରହିଛି ହରଷେ ମୈତ୍ରୀ ନାମ ଅଟେ ତାର,
ଏହାଙ୍କ ଉଦ୍ୟାନ ଫଳେ ପରିପୁଷ୍ଟ ସତତ ସୁର ସଂସାର।
(ଗଙ୍ଗାଧର ମେହେର—ପ୍ରଣୟବଲ୍ଲରୀ)

୩। ପୁଂସ ନାମ ପ୍ରେମ ଯୋଷା ନାମ ପ୍ରୀତି ମୁଖ ତାଙ୍କ ସୁତନାମ,
ନିର୍ମଳଚରିତେ ସ୍ଥାନ ବଦଳେ କଟିଲେ ଯାଇଥାନ୍ତି ମର୍ତ୍ତ୍ୟଧାମ। (ପ୍ରଣୟବଲ୍ଲରୀ)

୪। ନବଜାତ ଶିଶୁ ଦର୍ଶନ—ମଧୁସୂଦନ ଗ୍ରନ୍ଥାବଳୀ ପୃ. ୧୮୧

ପ୍ରସବରେ ପ୍ରତିଫଳନରେ ସେମାନେ ପ୍ରତିପାଳିତ । ସ୍ୱର୍ଗ ଯେପରି ଶୈଶବର କାନ୍ତ କୋଡ଼ରେ ଶାୟିତ । ଶିଶୁ ବିଶ୍ୱମାନବର ସ୍ରଷ୍ଟା । ପ୍ରକୃତିର କରୁଣା କକ୍ଷରେ ଶିଶୁର ମୁକ୍ତି ଚିର ସବୁଜ (୫) ।

ସୃଷ୍ଟିର ଊଷା ଏଇ ଶିଶୁ—ତା'ମୁଖର ହସ ପ୍ରକାଶରେ ସୃଷ୍ଟିର ଲୀଳାପଦ୍ମ ବିକଶିତ ଏବଂ ମର୍ତ୍ତ୍ୟର ମୃତ୍ୟୁ ଛନ୍ଦ ଓ ଅସ୍ଥିର ପଦ ପତନ ଏଇ ଶିଶୁର ଆଗମନରେ ଅଭିନନ୍ଦିତ । ଅମୃତ ଗୀତ ଅବାରିତଭାବେ ନିଃସୃତ । ଶିଶୁ ଦର୍ଶନର ପ୍ରତିକ୍ଷଣରେ ଶିଶୁ ସକଳ ଜୀବନର ଆଶା ଓ କାବ୍ୟ ଆଲୋକର ଊଷା । ଏହା ନିତ୍ୟ ଜୀବନ ଓ ଆନନ୍ଦର ଏକ ଅବିଚ୍ଛିନ୍ନ ଧାରା । ସକଳ ଜୀର୍ଣ୍ଣ ଓ ପୁରାତନ ପୌଷ ପତ୍ର, ବାତ୍ୟା କମ୍ପନରେ ଝଡ଼ିଗଲା ପରି ଊଷା-ଅନୁପମ ଶିଶୁର ଆଗମନରେ ଚିର ଅନ୍ଧାର ଓ ସକଳ ଜୀର୍ଣ୍ଣତାର ମରଣଭୟ ବିଦୂରିତ ହୋଇଥାଏ (୬) । ଯୁଗେ ଯୁଗେ କବି ଶିଶୁର ଏଇ ବିସ୍ମୟ-ବିମୂଢ଼ ସୃଷ୍ଟି-ସତ୍ତାକୁ ଅନୁଭବ କରିଛନ୍ତି, ତଥାପି ତା'ର ବିସ୍ମୟ ବିମୂଢ଼ ଭାବନାର ଶେଷ ନାହିଁ । ଶିଶୁ ଚରିତ୍ରର ମୃଦୁତା ଓ ସରଳତା କବିଙ୍କୁ ଉପମା-ଭୂଷଣରେ ଶିଶୁର ଅଳଙ୍କରଣ ପାଇଁ ସୁଯୋଗ ଦେଇ ନାହିଁ । ଶିଶୁ ହୋଇଛି ଅନନ୍ୟ । ତା'ର ସ୍ୱର୍ଗୀୟ. ଚିନ୍ମୟ ସତ୍ତା ବହୁ ଭାବନାର ଉତ୍ସରୂପେ କବିଙ୍କୁ ମୁଗ୍ଧ କରିଛନ୍ତି । କବି ଶିଶୁର ଲଳିତ ସୌନ୍ଦର୍ଯ୍ୟରେ କେତେବେଳେ ଆତ୍ମହରା ଓ କେତେବେଳେ ତା'ର ଲୀଳାୟିତ ଭାବଭଙ୍ଗୀରେ ଉତ୍ଫୁଲ୍ଲିତ । ଶିଶୁ ଯୋଗୁ ଏ ଧରା ସ୍ୱର୍ଗ ବଳି ସୁନ୍ଦର ଓ ତା'ର ବିଚ୍ଛେଦରେ ଏ ସଂସାର ଶ୍ମଶାନରୁ ଭୟଙ୍କର, ମରୁଭୂମିରୁ ନୀରସ, ନରକଠାରୁ ଅଧିକ ଯନ୍ତ୍ରଣାପ୍ରଦ । ତେଣୁ ଶିଶୁପାଇଁ ହିଁ ଏହି ବିଶ୍ୱ ଓ ବିଶ୍ୱପାଇଁ ହିଁ ଶିଶୁର ସୃଷ୍ଟି । ଶିଶୁ ହିଁ ବିଶ୍ୱର ବିବେକ । ତେଣୁ କବିର ଦୃଷ୍ଟି,

---

୫ । The child is father of the man;
And I could wish my days to be,
Bound each to each by natural piety—
Code to intimations of immortality

*William wordsworth*

୬ । ଦ୍ରଷ୍ଟବ୍ୟ - ଶିଶୁ ସୃଷ୍ଟି—କାବ୍ୟ ସଞ୍ଚୟନ ୧ମ ଖଣ୍ଡ—
ବୈକୁଣ୍ଠ ନାଥ ପଟ୍ଟନାୟକ ପୃଷ୍ଠା୧୩୬ -
ପ୍ରକାଶକ—ସବୁଜସାହିତ୍ୟ ସମିତି—୧୨୦୪ ।

ଶିଶୁ ଦୃଷ୍ଟିରେ ଅନ୍ତର୍ଜ୍ଞାନ ଅନନ୍ତ ଅଜ୍ଞତାକୁ ବୁଝି ପାରି ନାହିଁ । ସାହିତ୍ୟର ସୃଷ୍ଟି ପଥରେ ସଂସାରରେ ଏହି ସୃଷ୍ଟି-ମାଳନ୍ତି ମୁକୁଳିତ ହୋଇଛି ।

ରାମାୟଣ, ମହାଭାରତ ଓ ଭାଗବତ ଇତ୍ୟାଦି ପୁରାଣ ସାହିତ୍ୟରୁ ଆରମ୍ଭ କରି ଆଧୁନିକ କାବ୍ୟ-ଚେତନାରେ କ୍ରୀଡ଼ା କୁମାର ଶିଶୁର ଲୀଳା ଚଞ୍ଚଳ ମୂର୍ତ୍ତି ପ୍ରକଟିତ ହୋଇଛି । ସଂସ୍କୃତ ଆଳଙ୍କାରିକ ଓ ବୈଷ୍ଣବ କବିଗଣ କାବ୍ୟ ପ୍ରକାଶରେ ଶିଶୁର ଗୁରୁତ୍ୱକୁ ଯେପରିଭାବେ ହୃଦୟଙ୍ଗମ କରି ବାତ୍ସଲ୍ୟ ରସକୁ ଏକ ସ୍ୱାଦ୍ୟରସରୂପେ ଗ୍ରହଣ କରିଛନ୍ତି, ସାଂପ୍ରତିକ ସାହିତ୍ୟିକ ମଧ୍ୟ ସେହି ମନୋଚେତନାରୁ ଦୂରେଇ ଯାଇନାହାଁନ୍ତି । ସମୁଦାୟ ଓଡ଼ିଆ ସାହିତ୍ୟରେ ତେଣୁ ଶିଶୁ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିଛି ।

କବି ଅନ୍ତରଦେଇ ଉପଭୋଗ କରିଛି କ୍ରୀଡ଼ା କୁମାର ଶିଶୁର ଲୀଳାଚପଳ ଭାବମୂର୍ତ୍ତି । ଜନ୍ମପରେ ଚନ୍ଦ୍ରକଳାପରି ଶିଶୁର ଶରୀର ଓ ବୃଦ୍ଧି ବିକଶିତ ହୋଇଥାଏ । ସ୍ୱଭାବ ନିୟମରେ ସେ ବୟସ ମଧ୍ୟରେ ଗୁରୁଣ୍ଡିବା, ବସିବା ଓ ଚାଲିବାର ଶକ୍ତି ଲାଭ କରିଥାଏ । ବିଭିନ୍ନପ୍ରକାର ଉଚ୍ଚାରଣ ମଧ୍ୟ କରି ଶିଖିଥାଏ । ତାହାର କାର୍ଯ୍ୟକଳାପ ଏହି ସମୟରେ ପିତାମାତାଙ୍କୁ ସ୍ୱର୍ଗସୁଖ ତୁଲ୍ୟ ବୋଧହୁଏ । ସେହି ଅନୁଭବ ଦ୍ରଷ୍ଟା ଓ ଶ୍ରୋତା ନିକଟରେ ଯେତିକି ବାସ୍ତବ ଓ ପ୍ରାଣସ୍ପର୍ଶୀ ବୋଧହୁଏ, ସାଧାରଣ ଶବ୍ଦରେ ତା'ର ଅମୃତ ଅଭିବ୍ୟକ୍ତି ସମ୍ଭବ ହୋଇ ନଥାଏ ।

ମଧ୍ୟଯୁଗର ଓଡ଼ିଆ ସାହିତ୍ୟରେ ଶିଶୁ କୃଷ୍ଣଙ୍କ ବାଲ୍ୟଚପଳ ଅଭିନୟ ଅତୀବ ହୃଦୟସ୍ପର୍ଶୀ । ବୟଃସୋପାନ-ଆରୋହୀ କୃଷ୍ଣ ପ୍ରଥମ ହାତ ଓ ଜାନୁଭରା ଦେଇ ଚାଲି ଶିଖିଲେ । କଟିର କିଙ୍କିଣୀ କିଣି କିଣି ସ୍ୱନରେ ମୁଖର ହୋଇ ଉଠିଲା । ଗୁରୁଣ୍ଡି ଗୁରୁଣ୍ଡି ଚାଲୁଥିବା କୃଷ୍ଣ ଧୂଳି-ଦେହରେ ଖାଉଁଳି ପଡ଼ି ଧୂସରିତ ତନୁଶ୍ରୀ ନେଇ ମା' ଯଶୋଦାଙ୍କ ପାଖକୁ ଲେଉଟି ଆସୁଥିଲାବେଳେ ଯଶୋଦାଙ୍କ ମନର ସକଳ କାନ୍ତି ପିପାସା ଯେତେ ସେପରି ମୂର୍ଚ୍ଛନାରେ ଶିହରି ଉଠିଛି (୧) ଜନନୀ ପୁତ୍ର ଦେହରୁ ଧୂଳି ଝାଡ଼ିଦେଇ ତାଗିଦା କରି ପୁତ୍ରକୁ କୋଳେଇବାବେଳେ ବାହୁନି ଉଠନ୍ତି କୃଷ୍ଣ । ସେଥିରେ ପ୍ରବୋଧପାଇଁ

୧ । କର ଜାନୁରେ କରନ୍ତି ଗମନ, କଟି ତଟେ କରେ କିଙ୍କିଣୀ ସ୍ୱନ ।
କେତେବେଳେ ଧୂଳି ହୁଅନ୍ତି ବୋଳ, କର ଝାଡ଼ି ଯାଏ ହୁଅନ୍ତି ଚଳ ।
କାନ୍ଦନ୍ତି, ବାଣୀ କର୍କଶ ପାଇଁ; କପଟେ ଯଶୋଦା ଶାନ୍ତ କରାଇ ।
( ରସକଲ୍ଲୋଳ—୮ମ ଛାନ୍ଦ)

ମାତାକୁ ପୁଣି କଠୋରତା ଆଚରଣ କରିବାକୁ ପଡ଼ୁଛି । ସୃଷ୍ଟିର ପାରିବାରିକ ଆଚରଣ ମଧ୍ୟରେ ପରିବର୍ଦ୍ଧିତ ଶିଶୁ କୃଷ୍ଣ ଯେଉଁ ଚପଳତା ଓ କ୍ରୀଡ଼ା-କୌତୁକର ଅଭିନୟ କରିଛନ୍ତି, ଲବକୁଶ ବାଲ୍ମୀକି ଆଶ୍ରମରେ ଜନ୍ମ ଓ ପରିବର୍ଦ୍ଧିତ ହୋଇଲେ ବି ସେମାନେ ସେହି ସହଜାତ ଆଚରଣରୁ ଓହରି ଯାଇନାହାନ୍ତି । ସୀତା ତପସ୍ୱିନୀ ହୋଇ ପାରନ୍ତି; ସେମାନେ ଆଶ୍ରମ-ଆଶ୍ରିତ ହୋଇ ପ୍ରତିପାଳିତ ହୁଅନ୍ତୁ ପଛକେ, ସାଧାରଣ ସ୍ତରରେ ସେମାନଙ୍କର ଶାରୀରିକ ବିକାଶ ସାଧିତ ହୋଇଛି । ଶିଶୁର ରୂପ ତପସ୍ୱିନୀ ମାତା ହୃଦୟରେ ଆହ୍ଲାଦ ଅମୃତ ବର୍ଷଣ କରୁଛି । ସୀତା ହୃଦୟରେ ଭାବ ନ ଥିଲେ ତାଙ୍କର ଦଗ୍ଧପ୍ରାୟ ଜୀବନରେ ହାସ ଅଙ୍କୁରିତ ହେବ; କିନ୍ତୁ ଦୈବନିୟମ ଅପୂର୍ବ ସୁଖର ଅପୂର୍ବ ହାସ ସ୍ୱତଃ ଆସି ପ୍ରକାଶିତ ହୋଇଛି । ମା'କୁ ଚିହ୍ନିଲା ପରେ ତେବେ ଲବକୁଶ ତାଙ୍କ କୋଳରୁ ଅଲଗା ହେବାକୁ ଇଚ୍ଛା କରିନାହାନ୍ତି । ତାପସ କନ୍ୟାମାନେ ଲତା ଦୋଳିରେ ଝୁଲାଇ ମନ ତୋଷିଛନ୍ତି । ଝୁଲିବାର ସ୍ପୃହା ଆଦୌ ହ୍ରାସ ପାଇନାହିଁ । ଅଳି ବଢ଼ୁଛି, ଶିଶୁ ଧାଉଁଛି ଦୋଳି ନିକଟକୁ । ଶିଶୁ ମନର ଏଇ ଆମୋଦକର ତୃପ୍ତିକୁ କବି ଗଙ୍ଗାଧର ଯେପରି ଶିଶୁ ମନର ଗଭୀର କୋଣରୁ ଟାଣି ଆଣି-ଛନ୍ତି, ପୂର୍ବସୂରୀ ଅଭିମନ୍ୟୁ ରାଧାଙ୍କୁ ସୁରଙ୍ଗ ବାଙ୍କିଆରେ ଝୁଲାଇ ସେଇ ଦୋଳନ ମୂର୍ତ୍ତି ଅନ୍ତରାଳରେ ଜଣେ ସୌନ୍ଦର୍ଯ୍ୟପିପାସୁ ଦ୍ରଷ୍ଟାଭାବେ 'ରମା ଉମା ମୂର୍ତ୍ତି ପ୍ରବାଳ ପଲଙ୍କରେ' ଝୁଲୁଥିବାର ଉତ୍ପ୍ରେକ୍ଷା କରିଛନ୍ତି (୮) । ଗଙ୍ଗାଧର ଅହେତୁକ ଶିଶୁର ମାନସ ଦ୍ରଷ୍ଟା, ଅଭିମନ୍ୟୁ ଏ ସ୍ଥଳରେ ଲୀଳାପ୍ରୀତ ଶିଶୁର ସୌନ୍ଦର୍ଯ୍ୟବେତ୍ତା ।

ମାତା ହିଁ ଶିଶୁର ଶିକ୍ଷୟିତ୍ରୀ । ଅଭ୍ୟାସ ହିଁ ତା'ର ଚିହ୍ନ । ଅଭ୍ୟାସ-ଗୃହରୁ ସେ ଯେଉଁ ଜ୍ଞାନ ଆହରଣ କରେ ତା'ର ବଳରେ ଶିଶୁ ଠିଆ ହୁଏ ଦୁନିଆଁର ବଡ଼ ଦାଣ୍ଡରେ । ଏଇ ଅଭ୍ୟାସର ସଦୁପଯୋଗରେ ସମସ୍ତ ସୁମଣିଷ । ବାରମ୍ବାର ତଳେ ପଡ଼ି ହାତ ଗୋଡ଼ ରକ୍ତାକ୍ତ ହେଲେ ବି ଶିଶୁ ଅଭ୍ୟାସର ସହାୟତାରେ ଚାଲି ଶିଖେ । 'ଥରକୁ ଥର ପଡ଼ି ଚାଲ, ଚାଲିଇ ଅଭ୍ୟାସର ବଳ ।' ଏଇ ଅଭ୍ୟାସକୁ ଅବ୍ୟାହତ ରଖିବାପାଇଁ ମାତା ସହଯୋଗ କରିଥାଏ । କେତେ ପାହୁଣ୍ଡ ଦୂରରେ ଖେଳୁଥିବା ଶିଶୁକୁ ଗେହ୍ଲେଇ କରି ମା' ତା'ର ଅଣ୍ଟାକୁ ଡାକି ଆଣେ । ମା' ଡାକର ଅମୃତ ନିଃସ୍ୱନ ଶିଶୁ

---

୮ । ସୁରଙ୍ଗ ବାଙ୍କିଆରେ ରଙ୍ଗା ଦୋଳନ ଶୋଭନ ଏସନ ମାନଇ
ପଡ଼ୁଛି ରମା ଉମା ମୂର୍ତ୍ତିକି ବୁଲୁ ପ୍ରବାଳ ପଲଙ୍କେ ଅଛଇ ।
( ବିଦଗ୍ଧ ଚିନ୍ତାମଣି—୮ର୍ଥ ଛାନ୍ଦ—୭ ପଦ )

କର୍ଣ୍ଣରେ ଗୁଞ୍ଜରି ଉଠିବାକ୍ଷଣି ଶିଶୁର ମନ ଆନନ୍ଦରେ ଚଞ୍ଚଳ ହୋଇ ଉଠେ । ସେ ଧାଇଁ ଆସେ ଲବ କୁଶ ଧାଇଁ ଆସିଲା ଭଳି ସୀତାଙ୍କ କୋଳକୁ (୯) । ରାଧାଙ୍କର, ମାତାଙ୍କ ଅଙ୍ଗୁଳି ଆଙ୍କୁଳି ଧରି ଚାଲିବାର ଶୈଳୀ ଓ ବାଙ୍କ ଆଉଜା ଶୋଭା ଦେଖି କବି ଅଭିମନ୍ୟୁ ମୁଗ୍ଧ ହୋଇ ଯାଇଛନ୍ତି । ସେତିକି ନୁହେଁ, ଏହି ଶୋଭାଶ୍ରୀ ରତିପତିଙ୍କୁ ମଧ୍ୟ ମୁଗ୍ଧ କରିଛି । ସେ ରାଧା ସାହାଯ୍ୟରେ ସମଗ୍ର ସଂସାରକୁ ସମ୍ମୋହିତ କରିବେ ବୋଲି କଳ୍ପନା କରିଛନ୍ତି (୧୦) । ଠିକ୍ ସେହିପରି ଅମ୍ବିକା ବାଲ୍ୟାବସ୍ଥାରେ ଧାତ୍ରୀ କରକୁ ଅବଲମ୍ବନ କରି ଚାଲି ଶିଖିଛନ୍ତି । ତାଙ୍କର ପଦ-କ୍ଷେପଣରେ କଙ୍କିଣୀ ନିନାଦିତ ହୋଇଛି । ବାଲ୍ୟାବସ୍ଥାରେ ଶିଶୁର ଏହି ସହଜାତ ଆଚରଣ କବିର ଦୃଷ୍ଟିସୀମାରୁ ହଜି ଯାଇନାହିଁ । ଶିଶୁ ହୋଇଛି ଶୈଶବ ବିଦ୍ୟାଳୟର ଛାତ୍ର (୧୧) ।

ଏହି ବିଦ୍ୟାଳୟ ଶିଶୁ ମନରେ ହେତୁ ଉଦୟର ଜନକ ନୁହେଁ, ବରଂ ଅହେତୁକତାର ଜନ୍ମଦାତା । ଭଲ ଓ ମନ୍ଦର ବିଚାର ସେ ବୁଝେ ନା । ଯାହା ରୁଚିକର ଓ ମନପାଇଁ ଆମୋଦାତ୍ମକ, ତାକୁ ହିଁ ସେ ନିରନ୍ତର ଖୋଜୁଥାଏ । ମାଟିର ଶିଶୁ, ମାଟିକୁ ହିଁ ତା'ର ଜୀବନର ସମ୍ପଦରୂପେ ବରଣ କରେ । ମାଟିରେ ହିଁ ତା'ର ରସାଳ ତୃପ୍ତି ନିହିତ । ସୁମିଷ୍ଟ ଫଳ ଓ ରୁଚିକର ଖାଦ୍ୟ ଠାରୁ ମାଟି ହିଁ ତା' ପକ୍ଷରେ ଅମୃତ ତୁଲ୍ୟ (୧୨) । ମାଟିର ପ୍ରସାରିତ ଅଙ୍କରେ

---

୯ । ଦୂରରେ ଥାଇ ଡାକ ଅହ୍ଲାଦେ ସଖି, ବଢ଼ାଇଲେ ସେହି ଗତି ଶକତି ।
କୁମାରେ କୁତୁହଳେ ସହାସେ, ବେଗ ବେଗ ଯାନ୍ତି ଜନନୀ ପାଶେ ।
(ତପସ୍ୱିନୀ – ଦଶମ ସର୍ଗ – ୧୦ମ ପଦ ।)

୧୦ । ଅଗୁଳି ଆଙ୍କୁଳି ଧରି ଚାଲିବାର ବାଙ୍କ ଆଉଜା ଶୋଭା ରୁଚିହିଁ
ରତିପତି ମତି କଳ୍ପିଲା ଜଗତ ଏହା ସାହାରେ ଦେବି ମୋହି ।
(ବିଦଗ୍ଧ ଚିନ୍ତାମଣି—୪ର୍ଥ ଛାନ୍ଦ—୭ମ ପଦ ।)

୧୧ । ଅବଲମ୍ବି ଧାତ୍ରୀ କରକୁ କରି ଚାଲନ୍ତି ପାଦ
ଅତି ରହସରେ ନାଚନ୍ତି କରେ କଙ୍କିଣୀ-ନାଦ ।
(ଅମ୍ବିକାବିଳାସ—ବ୍ରଜନାଥ ଗ୍ରନ୍ଥାବଳୀ)

୧୨ । କେତେବେଳେ କରେ ମୃତ୍ତିକା ଧରି, ଦିଅନ୍ତି ରସନା ପଙ୍କିଳ କରି ।
ମାତା ଧରାଇଲେ ସୁନ୍ଦର ଫଳ, ଫିଙ୍ଗନ୍ତି ହଲାଇ ମୁଖମଣ୍ଡଳ ।
(ତପସ୍ୱିନୀ—ଦଶମ ସର୍ଗ – ୧୧ଶ ପଦ ।)

କ୍ରମପରିବର୍ଦ୍ଧିତ ଶିଶୁର ଭାବାବସ୍ଥାକୁ ଲକ୍ଷ୍ୟ କରିଛନ୍ତି କବି । ସାଧାରଣ ଶିଶୁ ଭଳି ଲବକୁଶ କ୍ରମଶଃ ବଡ଼ ହୋଇଛନ୍ତି । କୁନ୍ଦ, ଇନ୍ଦୁ, ତୁଷାର ମୋତିକୁ ବଳି ନିଃସର୍ଗ ଜ୍ୟୋତିଃଧାମନ୍ନ ଦନ୍ତପଂକ୍ତି ଉଦ୍‌ଗମ ହୋଇଛି । ତାଙ୍କ କଣ୍ଠରୁ ଦରବିକଶିତ କମଳ ଭଳି ଦରୋଟି ବାଣୀ ଉଚ୍ଚାରିତ ହେଲା । ସେ ଭାରତୀର ଶ୍ରୁତି ଓ ସେ ସମ୍ପୁଟରେ ଶିଶୁର ମନୋହର ଭଙ୍ଗୀ ସୀତାଙ୍କ ମନରେ ଯେଉଁ ପୁଲକ ସଞ୍ଚାର କରିଛି ତାହା ସବୁ ଜନନୀ ପକ୍ଷରେ ଅନବଦ୍ୟ । ଦରୋଟିର ଉଲ୍ଲସିତ ଉଚ୍ଚାରଣ ଭିତରେ ସୀତା, ଜୀବନର ସମସ୍ତ ଗ୍ଲାନିବୋଧକୁ ଭୁଲି ଯାଇଥିଲେ । ମାତାର ତାହାହିଁ ଯେପରି ଏକମାତ୍ର ସମ୍ବଳ, ସଂସାରର ଏକମାତ୍ର ସମ୍ପଦ । ସ୍ରଷ୍ଟା ଯେତେ ପ୍ରକାର ମଧୁର ସ୍ୱର ଓ ଧ୍ୱନି ସୃଷ୍ଟି କରିଛନ୍ତି, ଦରୋଟି ବାଣୀ ନିକଟରେ ସେମାନେ ନିହାତି ନଗଣ୍ୟ ।

"ସ୍ରଷ୍ଟା ଆପଣା ସ୍ୱର ଫୁଟାଇଛନ୍ତି
ସୃଷ୍ଟିର ଯେତେ ରାଗେ,
ମଉଳ ପଡ଼ନ୍ତି ସେ ସକଳ ସ୍ୱର
ଦରୋଟି ରାଗିଣୀ ଆଗେ ।"

(ବିଦ୍ୟୁତ୍‌ପ୍ରଭା-ସଞ୍ଚୟନ—ପୃ, ୩୪୦—ଶିଶୁର ଗାନ)

ବିଦ୍ୟୁତପ୍ରଭାଙ୍କର ଏଇ କାବ୍ୟିକ ଅଭିବ୍ୟକ୍ତିରେ ମାତୃହୃଦୟର ମର୍ମଜ୍ଞ ଅନୁଭବଲିପି ଉଲ୍ଲିଖିତ । ଶିଶୁ ଦରୋଟିର ରସାଳ ଲାବଣ୍ୟ ଏ ଜଗତରେ ଅତୁଳନୀୟ । ଭାଷାତୀତ ତା'ର ପ୍ରକାଶ । ମାନବ ଶିଶୁର କ୍ଷୁଦ୍ର କୋମଳ ଅଧରରେ ଉକୁଟି ଉଠୁଥିବା ହସ ରେଖାଟି ଏଇ ମର୍ତ୍ତ୍ୟ ଜଗତରେ ହିଁ କେବଳ ଅମର ପ୍ରୀତିଦାୟୀ (୧୩) ।

ଶିଶୁ ପରିପାର୍ଶ୍ୱ ଜଗତରୁ ଯାହା ଶିକ୍ଷା କରେ ତାକୁ ନିଜେ ଅଙ୍ଗେ ଲଗାଇ ପରୀକ୍ଷା କରି ଦେଖେ । ଅନୁକରଣ କରି ନିଜର ଭଙ୍ଗୀରେ ପ୍ରକାଶ

---

୧୩ । ମାନବ ଶିଶୁର କ୍ଷୁଦ୍ର କୋମଳ ଅଧରେ
ଭାସି ଉଠେ ଯେଉଁ ହସଟିକ,
ଭାଷାର ଅତୀତ ତା'ର ରସାଳ ଲାବଣ୍ୟ
ଏ ଜଗତେ ତୁଳନା ଅଛି କି ?
(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

କରିବାର ଦକ୍ଷତା ଶିଶୁ ନିକଟରେ ଯେତେ ବେଶୀ ଦେଖାଯାଏ ଅନ୍ୟତ୍ର ତା'ର ଦୃଷ୍ଟାନ୍ତ ଖୁବ୍ ବିରଳ । ପ୍ରତ୍ୟେକ ଶିଶୁ ନିତାନ୍ତ ଅନୁକରଣପ୍ରିୟ । ଚତୁଷ୍ପଦ ପଶୁ ପକ୍ଷୀଙ୍କ ସହିତ ଖେଳିବା, ସୁରଙ୍ଗ ପୁଚ୍ଛଯୁକ୍ତ ମୟୂର କମ୍ବା ସୁକୋମଳ ମୃଗ ଶିଶୁଙ୍କୁ ଧରି ନାଚିବା, ବିଲେଇ, କୁକୁର, ଗାଈ, କୋଇଲି ଇତ୍ୟାଦିଙ୍କର କଣ୍ଠସ୍ୱର ଅନୁକରଣ କରି ଆନନ୍ଦରେ ତନ୍ମୟୀ ଅଭିନୟ କରିବା ଲବ, କୁଶ ଓ କୃଷ୍ଣ ପ୍ରଭୃତି ଶିଶୁମାନଙ୍କ ପକ୍ଷରେ ଏକ ସ୍ୱାଭାବିକ କୌତୁହଳ । ଅନୁକରଣ ପ୍ରବୃତ୍ତିର ଗଭୀରତା ହେତୁ ସେମାନେ ଅନ୍ୟର ସ୍ୱରକୁ ନକଲକରି ନେଇଥାନ୍ତି । ଦେଖିଲେ ଦେଖାଇବାର ମନୋବୃତ୍ତି ତାଙ୍କୁ ଚଞ୍ଚଳ କରେ । ମାଙ୍କଡ଼ମାନଙ୍କୁ ଅନୁକରଣ କରି ଗଛରୁ ଗଛକୁ ଡେଇଁବା, ହଂସକୁ ଅନୁକରଣ କରି କୁଜା ହୋଇ ବସିବା ଇତ୍ୟାଦି ସେମାନଙ୍କର ଆମୋଦକର ଖେଳ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ଯୁଗଳ-ରସାମୃତଲହରୀରେ ଶିଶୁକୃଷ୍ଣ ଏତାଦୃଶ ଭୂମିକାରେ ଅବତୀର୍ଣ୍ଣ । ବଣ ଫେରନ୍ତା କୃଷ୍ଣ ଲେଉଟଣୀ ପାଉ ପରି ଚହଟ ନାଚ ନାଚ କୋଇଲି ପରି ବୋବାଇ, ମୟୂର ଭଳି କୁହାଟ ଗୁଡ଼ି ମାତା ମନ୍ଦିରକୁ ଆସୁଥିବାବେଳେ ତାଙ୍କର ମୁଗ୍ଧ ଅଙ୍ଖି ସେଥିରୁ ଯେଉଁ ଆହ୍ଲାଦ ଅନୁଭବ କରିଛି ତା'ର ତୁଳନା ନାହିଁ (୧୪) । କୃଷ୍ଣ ସହଯୋଗୀ ଗୋପବାଳକମାନଙ୍କ ସହିତ ଯେଉଁ କମନୀୟ ଅଭିନୟ କରିଛନ୍ତି ତାହା ଜନକୃଷ୍ଣଙ୍କ ଦୃଷ୍ଟିରେ ଯେପରି ଜୀବନ୍ତ କାବ୍ୟିକ ଅଭିବ୍ୟକ୍ତି ଲାଭ କରିଛି ତାହା ଅତୁଳନୀୟ ।

"କେ କେକୀ ପରିପ୍ରାୟେ ନାଚି ନାଚି ଯାଏ
କେ ବକ ପରିପ୍ରାୟେ ବସନ୍ତି
କେ ଭୃଙ୍ଗ ଝଙ୍କାର ଶୁଣି ଅହଂକାର
କରି ହୁଙ୍କାର କରନ୍ତି ।"
(ରସକଲ୍ଲୋଳ—ଗୁଡ ୭।୧୫)

---

୧୪ । କାହୁଁ ଲେ ଶିଖିଲୁ ନାଟ, ଲେଉଟଣୀ ପାରୁଆ ପରି ଚହଟ
ନାଚ ଅଛେ ଗଣ୍ଡି ହାଟ ।
କୋଇଲି ପରି ବୋବାଇ କଉତୁକିଆ ମୋ କଳା କହ୍ନାଇ
ଝୁଙ୍କାର କରୁଛୁ ବାଇ ।
କୁହାଟ ଦେଉଛୁ ମୟୂର କେତେ ଦେଖିବ ତା'ର ସୁନ୍ଦର
ହସାଇ ସେ ଯେ ଅପାର ।
( ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା—ଯୁଗଳ ରସାମୃତ ଲହରୀ )

ପଶୁପକ୍ଷୀମାନଙ୍କ ଭଳି ବର୍ଣ୍ଣନା ସ୍ୱାଦ୍ୟ ଚିତ୍ର ଓ ଚରିତ୍ର ଶିଶୁ-ମନ୍ତରେ ପ୍ରଭାବ ବିସ୍ତାର କରିଥାଏ । ତାଙ୍କ ମନଲାଗି ବ୍ୟକ୍ତିଙ୍କ ଭୂମିକାରେ ଶିଶୁମାନେ ଅଭିନୟ କରୁଥିବାର ଦୃଷ୍ଟାନ୍ତ ବର୍ଣ୍ଣନା କବିଙ୍କର ଲେଖାମାନରେ ପରିଦୃଷ୍ଟ ହୁଏ । ନନ୍ଦନନ୍ଦନ କୃଷ୍ଣ ନିଜକୁ ନରପତି ଭୂଲି ମନେକରି ସିଂହାସନ ଆରୋହଣ କରିବା ଘଟଣା ଏବଂ ଗୋପବାଳକମାନେ ବଣରେ ଫୁଲର ଛତି ଧରି କୃଷ୍ଣଙ୍କୁ ମଣିମା ମଣିମା ବୋଲି ସମ୍ବୋଧନ କରିବାର ଚିତ୍ର ରସକଲ୍ଲୋଳରେ କବି ଦୀନକୃଷ୍ଣ ସ୍ପଷ୍ଟଭାବରେ ବ୍ୟକ୍ତ କରିଛନ୍ତି ।

"କେତେବେଳରେ, କୃଷ୍ଣ ହୁଅନ୍ତି ନରପତି
କରେ ପୁଷ୍ପଛତି, ଧରି ସଖାପଂକ୍ତି
ମଣିମା ମଣିମା ବୋଲନ୍ତି ।" ( ର: କ—ଷୋଡ଼ ୬।୧୭ )

କୃଷ୍ଣ ସତେ ଯେପରି ଜଣେ କୁଶଳୀ ଅଭିନେତା । ରାଜାର ଅଭିନୟରେ ଶିଶୁ କୃଷ୍ଣର ମୋହନରୂପ ଲକ୍ଷ୍ୟ କରିଛନ୍ତି କବି ଗଡ଼ନାୟକ 'ଗୋପବାଳାର କୃଷ୍ଣ' କବିତାରେ (୧୫) । ପଲ୍ଲୀକବି ନନ୍ଦକିଶୋର ଦୂର ଅତୀତରେ ଲୁକ୍‌କାୟିତ ତାଙ୍କର ମଧୁର ଶୈଶବକୁ ରୋମନ୍ଥନ କଲାବେଳେ କ୍ରୀଡ଼ାସଙ୍ଗୀମାନଙ୍କ ସହିତ କରୁଥିବା ବାଳମହୋତ୍ସବର ଚିତ୍ର ତାଙ୍କ ସ୍ମୃତିପଥାରୂଢ଼ ହୋଇଛି । ସେମାନେ ଅଭିନୟ ଛଳରେ ଯେତେବେଳେ ବର୍ଣ୍ଣନା ପୌରାଣିକ ଚରିତ୍ରକୁ କିପରି ଅନୁକରଣ କରୁଥିଲେ ତା'ର ଦୃଷ୍ଟାନ୍ତ 'ନବବର୍ଷା ଭାବନା' କବିତାରେ ପ୍ରତିଫଳିତ । ସାଙ୍ଗସାଥିମାନଙ୍କ ମଧ୍ୟରୁ କେହି ଖାମରୂପରେ ସାଜି ହୋଇ

---

୧୫ । ମନ ହୋଇଲେ ମୋହନ ସେଇ
ବରଜପୁର କିଶୋ,
କୁଞ୍ଜବନେ ହୁଅଇ ରାଜା
ସଙ୍ଗମେଳେ ବସି ।
( ଗଡ଼ନାୟକ··ଗୋପବାଳାର କୃଷ୍ଣ )

ବିରାଟ ରାଜ୍ୟରେ ଯାତକ ସମ୍ଭବତ ରଣେକରେ ତ କିଏ ବିଶ୍ୱାମିତ୍ର ସଙ୍ଗେ 'ଶ୍ରୀରାମ ଲକ୍ଷ୍ମଣ ସାଜି ମିଥିଳା ଦାଣ୍ଡରେ ନାଚି ନାଚି ଚାଲିଯାଏ (୧୬)

ପୁତ୍ରକନ୍ୟାଭେଦରେ ଶିଶୁମାନଙ୍କର କ୍ରୀଡ଼ା-କୌତୁକ ଓ ଅଭିନୟ-କଳାର ତାରତମ୍ୟ ଲକ୍ଷ୍ୟ କରାଯାଇ ଥାଏ । କନ୍ୟାମାନେ ସାଧାରଣତଃ ମାଟି ଓ କାଠର କଣ୍ଢେଇଗୁଡ଼ିକରେ ମନମତେଇ ଖେଳଥା'ନ୍ତି ଏବଂ ସେମାନଙ୍କୁ ନିଜର ପୁତ୍ରକନ୍ୟା ଭାବି ଜନନୀ ନ୍ୟାୟରେ ତାଙ୍କର ଯତ୍ନ ନେଇ ଥାଆନ୍ତି । ବାଲି ଓ ମାଟି ହୁଏ ସେମାନଙ୍କର ରନ୍ଧନର ସାମଗ୍ରୀ । ଭଞ୍ଜ ଓ ବଡ଼ଜେନାଙ୍କ ସୃଷ୍ଟିରେ ଏହାର ଦୃଷ୍ଟାନ୍ତ ପ୍ରଚୁର । ଅମ୍ବିକାବିଳାସରେ କବି ବଡ଼ଜେନା ଦୁର୍ଗାଙ୍କ ବାଲ୍ୟବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି ଯେ ପଦ୍ମଲୋଚନା ଦୁର୍ଗା ବାଲି-ମାଟିରେ ଅନ୍ନବ୍ୟଞ୍ଜନାଦି ରନ୍ଧନର କଳ୍ପନା କରି ତାହାକୁ ପୁଣି ମିଛେ ମିଛେ ଭୋଜ୍ୟ ସାମଗ୍ରୀରୂପେ ଗ୍ରହଣ କରିଛନ୍ତି (୧୭) । କୋଟିବ୍ରହ୍ମାଣ୍ଡସୁନ୍ଦରୀ 'କନ୍ୟାବର କଣ୍ଢେଇ' ଖେଳରୁ କ୍ରମବୟଃପ୍ରାପ୍ତି ପରେ ମନ ଦୂରେଇ ନେଇଛନ୍ତି ।

କ୍ରୀଡ଼ା କୌତୁକ ଭିତରେ ଶିଶୁର ମତ୍ତ ଶୃଙ୍ଖଳା ଓ ଜଞ୍ଜାଳ-ସୃଷ୍ଟି ମାତାର ନିତ୍ୟ ଅନୁଭୂତ ବସ୍ତୁ । କବିର ଦୃଷ୍ଟି ଏଇ ଜଞ୍ଜାଳକର କ୍ରୀଡ଼ା ଅଭିନୟ ଭିତରୁ ନିତ୍ୟ ନୈମିତ୍ତିକତାର ଆସ୍ୱାଦନ ଉପଭୋଗ କରିଛି । କ୍ରୀଡ଼ା-କୌତୁକପାଇଁ ଶିଶୁକୁ ମାତା ପ୍ରୋତ୍ସାହିତ କରିବା ସଙ୍ଗେ ସଙ୍ଗେ ସମୟ ଦେଖି ତା'ର ଜଞ୍ଜାଳରୁ ମୁକ୍ତ ହେବାପାଇଁ ଇଚ୍ଛା କରିଛି । ଶିଶୁ ଭଣ୍ଡାଣ ମନୋବୃତ୍ତି ମୂଳରେ ତା'ର ଜଞ୍ଜାଳରୁ ମୁକ୍ତ ହେବାର ଆକାଙ୍କ୍ଷା ପ୍ରବଳ । ଏତଦ୍ଭିନ୍ନ ସେଥିରେ ଶିଶୁ ପ୍ରବୋଧନାର ପ୍ରଚେଷ୍ଟା ମଧ୍ୟ ପ୍ରଚ୍ଛନ୍ନ । କୃଷ୍ଣ ଯଶୋଦାଙ୍କୁ କେତେକ ଜଞ୍ଜାଳଗ୍ରସ୍ତ କରିଛନ୍ତି ତା'ର ଇୟତ୍ତା ନାହିଁ । ସରଲବର୍ତ୍ତୀ ପାଇଁ ଦଧି ମନ୍ଥାଇ ନଦେବା, ସକାଳପ୍ରହରୁ ଉଠି ଗୋପବଧୂ ଯଶୋଦାଙ୍କ

---

୧୬ । ବିଶ୍ୱାମିତ୍ର ସଙ୍ଗେ ଶ୍ରୀରାମ ଲକ୍ଷ୍ମଣ ସାଜି କେହି ଘୁଣ୍ଡେ ଘୁଣ୍ଡେ
ନାଚି ନାଚି କାହିଁ ଚାଲି ଯାଉଥାନ୍ତି କି ରଙ୍ଗେ ମିଥିଳାଦାଣ୍ଡେ !
( ପଲ୍ଲୀକବି ନନ୍ଦକିଶୋର—ନବବର୍ଷ ପ୍ରବନ୍ଧ )

୧୭ । ଅନ୍ନ-ବ୍ୟଞ୍ଜନାଦି ରନ୍ଧନ ଚର୍ଚ୍ଚି କରି କଳ୍ପନା
ଅଶନ 'ଛା' ମିଛେ କରନ୍ତି ପୁଣି ପଦ୍ମଲୋଚନା ।
( ବ୍ରଜନାଥ ଗ୍ରନ୍ଥାବଳୀ—ପୃ. [illegible] )

ଦଧି ମନ୍ଥନ କାର୍ଯ୍ୟରେ ବାଧା ଦେବା କୃଷ୍ଣଙ୍କର ଏକ ନିତିଦିନିଆ ବ୍ୟାପାର (୧୮) । ସେତେବେଳେ ଯଶୋଦା କୃଷ୍ଣଙ୍କୁ ସୁନାମୁଅ କହି ତାଙ୍କ ମନ ନେଇଛନ୍ତି । ଶୀତଳ ବେଳ ଗଡ଼ିଗଲେ ଦହିରୁ ଲହୁଣୀ ମିଳିବ ନାହିଁ । ଏହି ଅସୁବିଧାରୁ ମୁକ୍ତି ପାଇବା ଚିନ୍ତାରେ କାହ୍ନୁଙ୍କୁ ସୁବୁଦ୍ଧି-ସୁନା କହି ଯଶୋଦା ତାଙ୍କର ମନ ନେଇଛନ୍ତି (୧୯) । କିନ୍ତୁ ଗୋପପୁରରେ ଯେ କେହି କୃଷ୍ଣଙ୍କୁ ସୁବୁଦ୍ଧି-ସୁନା କହୁଥିବେ ବିଶ୍ୱାସ ନୁହେଁ । କାରଣ ସମସ୍ତଙ୍କ ଘରେ ତ ତାଙ୍କର ଅବାଧ ପ୍ରବେଶ । ସର ଲବଣୀ ଚୋରିକରି ଖାଇବା ତାଙ୍କର ନିତିଦିନିଆ ଅଭ୍ୟାସ, ଚୋରି କରିବାକୁ ଯାଇ କାହାର ହାଣ୍ଡି ଭାଙ୍ଗିବା, ଲହୁଣୀ ଖାଇ-ନପାରି ମାଙ୍କଡ଼ମାନଙ୍କୁ ଦେବା ଆଦିର ଅଭିଯୋଗ ଗୋପୀମାନଙ୍କ ମୁଖରୁ ବହୁବାର ଶୁଣା ଯାଇଛି । ଏହି ଦୁଷ୍ଟବାଳକ କୃଷ୍ଣ ସୁବୁଦ୍ଧି ସୁନା ହୋଇଛନ୍ତି ଓ ଗୋପର ଅନ୍ୟାନ୍ୟ ବାଳକମାନେ ଦୁର୍ଜନ ଦୁଷ୍ଟ ବିବେଚିତ ହୋଇଛନ୍ତି । ଏହାର ଅନ୍ତରାଳରେ ମାତୃହୃଦୟର ଆନ୍ତରିକତା ଥିଲେ ବି ଜଞ୍ଜାଳ ମୁକ୍ତିର ବାସନା ପ୍ରଚ୍ଛନ୍ନ ।

ଜଞ୍ଜାଳପାଇଁ ଯେତେ ଅଲଗା ରହିବାର ଚେଷ୍ଟା କଲେ ବି ମା' ଅଲଗା ରହି ପାରେ ନା ବା ଶିଶୁ ତାଙ୍କୁ ଛାଡ଼ିକରି ହୋଇ ଯିବାର ସୁଯୋଗ ହଏ ନା । କଥାରେ ଅଛି --

'ଦୁଃଖୀ ଲୋକକୁ ଲଗାନା ମାଗିବନି
କଅଁଳ ପିଲାକୁ ଲଗାନା ଲଗିବନି ।'

---

୧୮ । ଉଠିଲୁ ଏଡ଼େ ବେଗି କାହିଁକି, ରେ ଦୁଃଖୀଧନ
ଦଧି ମନ୍ଥାଇ ଦେବୁ ନାହିଁକି ରେ ।
ମନ୍ଥିବି ମୁଁ କେମନ୍ତ, ଖୁଆ ଦନ୍ତରୁ ନାଚ,
ଛାଡ଼ ଦେଉଛୁ ସର ଖୋଇକରେ ।
(ଗୋପାଳକୃଷ୍ଣ ପଦ୍ୟାବଳୀ)

୧୯ । ଶୀତଳ ବେଳରେ ଯେବେ ନୋହିବ ଦଧି ମନ୍ଥନ
ଖର ଲାଗିଲେ ପରା ଲବଣୀ ହୋଇବ ମ୍ଳାନ ।
ଏ ଗୋପପୁରେ ବାଳକେ ବଡ଼ ଅବୁଝା ଦୁର୍ଜନ
ସୁବୁଦ୍ଧି ସୁନା ମୋ କାହ୍ନୁ ସମସ୍ତେ ବୋଲନ୍ତି ଧନ୍ୟ ।
( ଗୌରଚରଣ ପଦ୍ୟାବଳୀ )

କଅଁଳା ପିଲାଙ୍କୁ ଟିକିଏ ସ୍ନେହ ମମତା ଦେଲେ ସେ ଆଉ ପାଖ ଛାଡ଼ିବାକୁ ଇଚ୍ଛା କରେନି । ଏହା ଶିଶୁର ସହଜାତ ଅଭ୍ୟାସ । କୃଷ୍ଣ ଯଶୋଦାଙ୍କ ଗର୍ଭରୁ ଜାତ ନ ହୋଇଲେ ବି ତାଙ୍କରିଠାରେ ଜନ୍ମର ପରମୁହୂର୍ତ୍ତରୁ ଲାଳିତପାଳିତ ହୋଇ ମାତାରୂପେ ତାଙ୍କୁ ମାନି ନେଇଛନ୍ତି । ଶିଶୁକୃଷ୍ଣ ଯଶୋଦାଙ୍କ ନିକଟରୁ ଯେଉଁ ମମତା ଆଶା କରିଥାନ୍ତି ସେହି ସ୍ନେହ ଗୋପୀମାନଙ୍କଠାରୁ ପାଇବା ପାଇଁ ସେ ମଧ୍ୟ ଶୈଶବାବସ୍ଥାରେ ମନ ବଳାଇଛନ୍ତି । ଯୁବକ କୃଷ୍ଣ ଗୋପୀ-ପ୍ରେମ ପାଗଳ; କିନ୍ତୁ ଶିଶୁ କୃଷ୍ଣ ଗୋପୀମାନଙ୍କ ଅପତ୍ୟ ସ୍ନେହ ଲାଳସୀ । ଯଶୋଦାଙ୍କ କାଖରୁ କେଉଁ ଗୋପୀଙ୍କ ପାଖରୁ ଡେଇଁ ପଡ଼ିବାର ଦୃଶ୍ୟ ବଡ଼ଜେନାଙ୍କ ଗୋପୀ ବିଳାପରେ ପ୍ରକାଶିତ । (୨୦) ।

ଶିଶୁର ଲୀଳା-ଚଞ୍ଚଳ କ୍ରୀଡ଼ା ମନମୁଗ୍ଧକର ହୋଇଲେ ବି କେବଳ ବନ୍ଧନ, ଭାବଭଙ୍ଗୀ ଓ କ୍ରୀଡ଼ା କୌତୁକର ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି କରି ତାହାକୁ ଅଧିକ ଆକର୍ଷଣୀୟ କରାଯାଇଥାଏ । ସେଥିରେ ଅହ୍ଲାଦ ଯେତେ, ଶାନ୍ତି ବି ତେତେ । କୁଆ କୁଆଙ୍କ ଭିତରେ ଖେଳ ଲଗାଇ ମଜା ଦେଖିବାର ସହଜ ମନୋବୃତ୍ତିର ଦୃଷ୍ଟାନ୍ତ କାବ୍ୟ କବିତାରେ ମିଳିଥାଏ । ପ୍ରତିଦ୍ୱନ୍ଦ୍ୱିତାମୂଳକ ରାମକୃଷ୍ଣଙ୍କ ନାଚର ଦର୍ଶକ ହୋଇଛନ୍ତି ଗୋପୀ । ଗୌରଚରଣ ପଦ୍ୟାବଳୀରେ ଏହାର ସ୍ୱାଭାବିକ ପ୍ରତିଫଳନ ଦର୍ଶନୀୟ ।

"ରାମ ନାଚୁଛନ୍ତି ବାଦରେ,
କୃଷ୍ଣଙ୍କୁ ଅନାଇ ଆଦରେ
ବାଜେ ଝୁମୁଁ ଝୁମୁ ଝୁମୁକି
ନୂପୁର ରୋହିଣୀ ନନ୍ଦନ ପାଦରେ ।
ଶ୍ରୀକୃଷ୍ଣ ମୁଖକୁ ଅନାଇ,
କେଉଁ ଗୋପୀ କହେ ଦେଖାଇ
ରାମଙ୍କର ନାଚ ଅଧିକ,
ହେଲା ତ ତୁମେ କି ନାଚିଲ କହ୍ନାଇ ? (ଗୌରଚରଣ)

୨୦ । 'କାଖ ହୋଇଥାଏ ମାଆ କାଖରେ
ମୋତେ ଦେଖଇଟି ଯେବେ ପାଖରେ,
ହସି ଉଠଇ ହୋଇ କର କର
ମୋତେ ବଢ଼ାଇ ଦିଏ ବେନି କର ।'
(ବ୍ରଜନାଥ ବଡ଼ଜେନା—ଗୋପୀବିଳାପ)

କୃଷ୍ଣଙ୍କପରି ଚପଳମତି ବାଳକ ପିଆଯଳଶ ଗୋଷ୍ଠୀସୂତ ବଳରାମଙ୍କ ପ୍ରଶଂସା କାହିଁ ସହି ପାରିବେ ? ଗୋପୀମାନଙ୍କର ଛଳବାଣୀ ଶୁଣି ପ୍ରତିଦ୍ୱନ୍ଦ୍ୱୀ ହୋଇ ଅଦମ୍ୟ ଆଗ୍ରହରେ ବିଭିଙ୍ଗୀ ଠାଣିରେ ନାଚିଛନ୍ତି ଶ୍ରୀକୃଷ୍ଣ । ଶିଶୁ ମନର ଏଇ ପ୍ରତିଦ୍ୱନ୍ଦ୍ୱୀ ମନୋଭାବ ଏଥିରୁ ସୁସ୍ପଷ୍ଟ ।

ଶିଶୁର ଲୀଳା—ଚଞ୍ଚଳ ଭଙ୍ଗୀ, ଅଭିନୟ ଓ ଅନୁକରଣ ଏବଂ ପ୍ରତିଦ୍ୱନ୍ଦ୍ୱୀ ମନୋଭାବ ପ୍ରତ୍ୟେକଙ୍କୁ ମୁଗ୍ଧ କରେ । ସେଇ ଅଭିନୟର ମୁଗ୍ଧ ବିଭୋରତା ଭିତରେ ଅନ୍ତର୍ଲୀନ ଶିଶୁ ବ୍ୟକ୍ତିତ୍ୱର ସତ୍ତା କବି ଅନୁଭବ କରିଥାଏ । ବିରାଟ ବଟଦ୍ରୁମର ଅସ୍ତିତ୍ୱ ଅତି ସୂକ୍ଷ୍ମ ଗୋଟିଏ ବୀଜ ମଧ୍ୟରେ ସଂଗୁପ୍ତ ଥିଲାପରି କ୍ଷୁଦ୍ର ଶିଶୁ ମଧ୍ୟରେ ବହୁମୁଖୀ ବ୍ୟକ୍ତିତ୍ୱର ସତ୍ତା ଅନ୍ତଃସଳିଳା ହୋଇ ରହିଥାଏ । ସେ ଜଣେ ନିଖୁଣ ଅଭିନେତା ନୁହେଁ । ସମବୟସ ସହୃଦୟମାନଙ୍କର ବନ୍ଧୁ ନୁହେଁ, କିମ୍ବା ପିତାମାତାଙ୍କର ଅଲିଅଳ ସନ୍ତାନ ନୁହେଁ । ଗୋଟିଏ ସୁରଭିତ ଗୋଲାପ କଳିକା ମଧ୍ୟରେ ଫୁଟିବାର ଅସୀମ ଉନ୍ମାଦନା ଚହଲି ଉଠିଲାପରି ନିର୍ମୋହ, ନିଷ୍ପାପ, ସରଳ, କୋମଳ ଏହି ଶିଶୁ ପ୍ରାଣରେ ଅନାଗତ ଜୀବନର ପ୍ରଚ୍ଛନ୍ନ ବିକାଶ ସ୍ଫୂର୍ତ୍ତି ଉଠୁଥାଏ । ଆଜିର ଶିଶୁ ପ୍ରାଣରେ ଭବିଷ୍ୟତ କଳାବିତ୍‌ର ମନସ୍ୱିତା, ଦିଗ୍‌ବିଜୟୀ ସୈନିକର ଶୌର୍ଯ୍ୟ ଅଭିଯାନ, ସ୍ଥପତିର କାରୁକୌଶଳ, ମହାତ୍ମାର ବିଶ୍ୱପ୍ରାଣ ମହାନୁଭବତା ସଞ୍ଚିତ ହୋଇ ରହିଥାଏ (୨୧) ।

ତେଣୁ ଆଧୁନିକ କବି ମାନସରେ ଶିଶୁ ଅସଂଖ୍ୟ ସମ୍ଭାବ୍ୟ ବ୍ୟକ୍ତିତ୍ୱର ଆଧାର । ଶିଶୁ ଭବିଷ୍ୟତର ସ୍ରଷ୍ଟା ଓ ସଂସ୍କାରକ । ଯୁଦ୍ଧ ବିପ୍ଳବ ଓ ଝଡ଼ର ଶୃଙ୍ଖଳକ, ଅସହାୟ ସଭ୍ୟତାର ରକ୍ଷକ । ତେଣୁ କବି ସଚ୍ଚି ରାଉତରାୟ ନବଜାତକ ଠାରେ ଝଡ଼ର ଜବାବ ଲକ୍ଷ୍ୟକରି ଆଶା କରିଛନ୍ତି, ଯେ ଏହି ନବଜାତ କନ୍ୟା ଏଇ ପୃଥିବୀରେ ନୂତନ ମଣିଷ, ଏକ ସଫଳ ବ୍ୟକ୍ତିତ୍ୱ ପ୍ରସାରିତ କରିବ । ମଣିଷ ମଣିଷ ଭିତରେ ଥିବା ବ୍ୟବଧାନ ଦୂରକରି ସୁନ୍ଦର ନିଶାଣ ପ୍ରତିଷ୍ଠା କରିବ (୨୨) । ଶତାବ୍ଦୀର ସ୍ୱପ୍ନ, ଯୁଗର ଦୁହିତା 'ଲୋପାମୁଦ୍ରା' ତା' କଣ୍ଠରେ

୨୧ । ଦ୍ରଷ୍ଟବ୍ୟ—ଶିଶୁ—ବିଦ୍ୟୁତ୍‌ପ୍ରଭା ସଞ୍ଚୟନ—ପୃଷ୍ଠା-୩୭୫ ।

୨୨ । ତା' ପ୍ରକାଣ୍ଡ କନ୍ୟା ତୋର ଚକ୍ଷୁ ପରେ ଝଡ଼ର ଜବାବ,
ଆଣୁ, ଆଣୁ ଝଞ୍ଜାବର୍ତ୍ତ ।
ଅବିଶ୍ରାନ୍ତ ବରଷଣ ଧାର ।
(ସଚ୍ଚି ରାଉତରାୟ—ପାଣ୍ଡୁଲିପି—ନବଜାତକ—ପୃଷ୍ଠା-୧୫୪)

ବିପ୍ଳବର ନିର୍ଘୋଷ ଓ ପ୍ରାଣରେ ଭରି ଅନନ୍ତ ପିପାସା ଏବଂ ଏ ଅସହାୟ ସଭ୍ୟତାକୁ ଶୋଷିବାର ଦୁର୍ବାର ନିଶା ନେଇ ସୃଷ୍ଟି ଉଠୁଥିବା ସମୟର ପ୍ରତିଟି ସୋପାନରେ ଧେ ଇ ଆସିବ ଏକ ଯୁଗାନ୍ତକାରୀ ବିପ୍ଳବ, ଗଢ଼ିବ ନୂତନ ସ୍ତରର ସଭ୍ୟତା ଉପଯୁକ୍ତ ପରିବେଶ ଓ ଅନୁକୂଳ ପରିସ୍ଥିତିରେ (୨୩)।

ଉପଯୁକ୍ତ ଉପାଦାନରେ ଅଙ୍କୁରର ପୂର୍ଣ୍ଣ ବିକାଶ ହେଲାପରି ଶିଶୁର ସ୍ଫୁଟନ୍ତ୍ୱୋନ୍ମୁଖୀ ବ୍ୟକ୍ତିତ୍ୱର ପୂର୍ଣ୍ଣତା ପାଇଁ ପିତାମାତାଙ୍କ ଯତ୍ନ ଓ ତତ୍ପରତା ନିହାତି ଆବଶ୍ୟକ। କେବଳ ଅପତ୍ୟ ସ୍ନେହର ନିର୍ଝର ଖୋଲି ଦେଲେ ଶିଶୁ ମଣିଷ ହୁଏନି, ସେଥିପାଇଁ ବାଲ୍ୟାବସ୍ଥାରୁ ସ୍ନେହ ଓ ଶାସନ ଅପରିହାର୍ଯ୍ୟ। ବିଦ୍ୟୁତପ୍ରଭାଙ୍କର 'ସୁନା ପୁଅ' ଓ 'ଚଗଲା ହରି' କବିତା ଦୁଇଟିକୁ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ। 'ସୁନା ପୁଅ'ରେ ଶିଶୁ ମନ ଗଠନ ପାଇଁ ଯେତିକି ସଦୁପଦେଶ ପ୍ରଦତ୍ତ, 'ଚଗଲା ହରି'ରେ ଦୁଷ୍ଟାମୀ ଦମନ ପାଇଁ ସେତିକି ଭୟାବହ ଚିତ୍ରର ସୂଚନା ସୁସ୍ପଷ୍ଟ। ମଧୁସୂଦନଙ୍କ ଲେଖାରେ ମଧ୍ୟ ଅଧିକାଂଶ କବିତା ଶିଶୁର ବ୍ୟକ୍ତିତ୍ୱ ଗଠନ ଉଦ୍ଦେଶ୍ୟରେ ଅଭିପ୍ରେତ। ଅବଶ୍ୟ ଏଥିପାଇଁ ଶିଶୁର ନିଜ ଚେଷ୍ଟା ଅପେକ୍ଷା ପିତାମାତାଙ୍କର ଯତ୍ନ ବିଶେଷ କାମ୍ୟ। ନିଜ ସନ୍ତାନସନ୍ତତିଙ୍କୁ ବିଜ୍ଞ ଓ ବିଦ୍ୱାନ କରି ଗଢ଼ିବା କେବଳ ସେମାନଙ୍କର କର୍ତ୍ତବ୍ୟ ନୁହେଁ, ଏଥିରେ ତାଙ୍କର ଆତ୍ମତୃପ୍ତି ନିହିତ। କେଉଁ ପିତାମାତା ନିଜ ସନ୍ତାନର ପ୍ରଶଂସା ଶୁଣି ଖୁସି ନ ହୁଅନ୍ତି ? ଦୁଷ୍ମନ୍ତ ଭରତଙ୍କର ସିଂହ ଶିଶୁ ସହିତ କ୍ରୀଡା କରିବାର ସାହସ ଦେଖି ଉଲ୍ଲସିତ ହୋଇଛନ୍ତି। ଲବ, କୁଶ ଅଳ୍ପ ବୟସରେ ବେଦ, ପୁରାଣ ଇତ୍ୟାଦିରେ ଜ୍ଞାନ ଅର୍ଜନ କରିଥିବା ଦେଖି ତପସ୍ୱିନୀ ସୀତା ମଧ୍ୟ ଆତ୍ମହରା ହୋଇ ପଡ଼ିଛନ୍ତି। ତାଙ୍କ ଜୀବନର ସମସ୍ତ ଦୁଃଖ ଦାହକୁ—

"ବେଦଜ୍ଞ ପୁତ୍ରର ପ୍ରତିଭା ଦେଖି, ବୈଦେହୀ ବହିଅନ୍ତି ଦୁଃଖ ଉପେକ୍ଷି।
ପୁତ୍ର ପରିଶଂସା ମାତା ଶ୍ରବଣେ, ପରିଣତ ହୁଏ ସୁଧା ସ୍ରବଣେ (୨୪)"

---

୨୩। ଶତାବ୍ଦୀର ସୁତା ତୁମେ, ଦୀପ୍ତି ମନ୍ତ୍ର ଆଗ୍ନେୟ ଅନଳେ
କଣ୍ଠେଭରି ବିପ୍ଳବ ନିର୍ଘୋଷ ପ୍ରାଣେ ତବ ଅନନ୍ତ ପିପାସା
ଅସହାୟ ସଭ୍ୟତାକୁ ଶୋଷିବାର ଦୁର୍ବାର ନିଶା।
(କ୍ଷେତ୍ରବାସୀ ନାୟକ—ଲୋପାମୁଦ୍ରା—ଉଚ୍ଚାରଣ ପୃ-୪୩)

୨୪। ଗଙ୍ଗାଧର ମେହେର—ତପସ୍ୱିନୀ—୧୦ମ ସର୍ଗ—ପଦ—୩୩, ୩୬।

ପିତାମାତା ଓ ସନ୍ତାନସନ୍ତତି ଉଭୟ ଉଭୟଙ୍କ ଜୀବନର ପରିପୂରକ । ପିତାମାତାଙ୍କ ବିନା ସନ୍ତାନ ଜୀବନ ଯେପରି ନୀରସ, ସନ୍ତାନହୀନ ପାରିବାରିକ ଜୀବନ ସେହିପରି ଅପୂର୍ଣ୍ଣ । ମାତାର ଅମୃତ ବକ୍ଷ ଶିଶୁ ପକ୍ଷରେ ସ୍ୱର୍ଗସୁଖଠାରୁ ବଳି ଅଧିକ ଆହ୍ଲାଦପ୍ରଦ । କୌଣସି ପାର୍ଥିବ ବିଭବ ଏହି ସୁଖର ସମତୁଲ ନୁହେଁ । ମଧୁସୂଦନଙ୍କ ଦୃଷ୍ଟିରେ ମାତାର ଅମୃତ ବକ୍ଷ ସ୍ୱର୍ଗ ସୁଖ ଜିଣି ଅତି ସୁଖମୟ, ରାଜ୍ୟବିଭବ ତା' ନିକଟରେ ତୁଚ୍ଛ । ମାତାହିଁ ସନ୍ତାନର ଶ୍ରେଷ୍ଠ ଆଶ୍ରୟ, ଅଭୟ ଆଶ୍ରୟସ୍ଥଳୀ ମାତାର ବକ୍ଷ । ଯେଉଁ ଶିଶୁ ସେହି ସୁଖରୁ ବଞ୍ଚିତ ସେ ବୋଧହୁଏ ଏକମାତ୍ର ହତଭାଗ୍ୟ ଓ ଅରକ୍ଷିତ । ନାରୀକବି ବିଦ୍ୟୁତ-ପ୍ରଭାଙ୍କର ଚିନ୍ତାଧାରା ମାତୃ ହୃଦୟର କୋମଳ ଅନୁରାଗରେ ଅରୁଣାଭ । ଅତି ମର୍ମସ୍ପର୍ଶୀ ଆବେଗରେ ନାରୀ ଲେଖନୀରୁ ନିଃସରିତ ହୋଇଛି—

"ମାଆର ସ୍ନେହ ଯେବେ ପୂରଣ
କରୁଥାନ୍ତା କେହି ଏ ଭବେ
କିମ୍ପାଇଁ ମାତୃହୀନ ବଦନେ
ଅଶ୍ରୁରେଖା ଫୁଟନ୍ତା କବେ ।" (୨୫)

ଏପରି ଏକ କରୁଣାର୍ଦ୍ର ମୁହୂର୍ତ୍ତର ଆବେଗ ଅଧୀର ପ୍ରକାଶ କବି ଗୋଦାବରୀଶ ମହାପାତ୍ରଙ୍କ ସୃଷ୍ଟିରେ ଲକ୍ଷଣୀୟ । ମାତୃହୀନ ଗୋଟିଏ ଶିଶୁର ମର୍ମନ୍ତୁଦ ବେଦନାକୁ କବି ନିଜେ ତରଳ ହୃଦୟରେ ଅନୁଭବ କରି ପାଠକ-ମାନଙ୍କ ମନରେ ଅନ୍ତରୂଳ ସମ୍ବେଦନା ସୃଷ୍ଟି କରିଛନ୍ତି । ମାଆର ମୃତ୍ୟୁ ପରେ ଛୋଟଜଣ୍ଡ ପୁଅଟି ବାପକୁ ତା'ର ବାରମ୍ବାର ପ୍ରଶ୍ନ କରିଛି ମା କାହିଁ ? ହାଟକୁ ଯାଇଛି ବୋଲି ମିଛ କଥା କହି ବାପା ତାକୁ ଭୁଲାଇଛି । ସେହି ଠିକ ପୁଅଟିର ଜିଦ୍ ସମ୍ଭାଳି ନ ପାରି ଦିନେ ବାଧ୍ୟ ହୋଇଛି ତାକୁ ହାଟକୁ ନେବା-ପାଇଁ ତା' ମାଆର ଦର୍ଶନରେ । ନେଇଛି ସତ; କିନ୍ତୁ ତା' ମାଆପରି ତାକୁ କାଖେଇ କରି ନୁହେଁ । ବିକ୍ରି କରିବାକୁ ନେଉଥିବା ପନପରିବା ବୋଝରେ ତାକୁ ବୋଝେଇ କରି ନେଇଛି । ପୁଅ ବୁଲୁଛି ଅସରନ୍ତ ବାଟ, ହାଟରେ ପହଞ୍ଚିବାକୁ କେତେ ବାଟ ବୋଲି ଉତ୍କଣ୍ଠାରେ ପଚାରୁଛି—

---

୨୫ । ବିଦ୍ୟୁତପ୍ରଭା ସ୍ୱପ୍ନପୁନ—ମାଆ—ପୃଷ୍ଠା-୨୪ ।

"କେତେ ବାଟ ଗଲେ ଦେଖିବ
　　　　ମାଆକୁ ବାପକୁ ପଛରେ ପୁଅ
ବୋଝରେ ବସାଇ ବାପ ଗଲେ
　　　　ବାଟେ ବୁହାଇଁ ଦ'ଧାର ଲୁହ ।
କେମିତି କହିବ ମାଆ କାହିଁ ଅଛି
　　　　କୁନ କ ବୁଝିବ ତଳେ ;
ବୋଝରେ ମୁଣ୍ଡାଇ ନଅନ୍ତା କି ତାକୁ
　　　　ମାଆ ତା'ର ଘରେ ଥିଲେ ।" (୨୬)

ସତେ ତା'ର ମାଆ ଥିଲେ ସେ କ'ଣ ଏମିତି ବୋଝରେ ବୁହାହୋଇ ଯାଇଥାନ୍ତା ? ମାତୃ ସ୍ନେହର ଏଇ ଅଭାବଜନିତା ସନ୍ତାନ ପାଇଁ ସୁଧାର ନିର୍ଝର ପରି । ମନୁଷ୍ୟ ସମାଜରେ କାହିଁକି ସମୁଦାୟ ପ୍ରାଣୀ ଜଗତରେ ଏହାର ମୂଲ୍ୟ ଅଦେୟ । ଜୀବନର ବିକାଶରେ ଏହା ଅମୃତ ନିର୍ମାଲ୍ୟ । ଯେଉଁ ସମାଜରେ ଏହାର ଭିତ୍ତି ଯେତେ ଦୃଢ଼ ସେହି ସମାଜ ସେତେ ଉନ୍ନତ ।

ମାତା ହୃଦୟରେ ସନ୍ତାନବାତ୍ସଲ୍ୟର ଜାଗରଣ ସ୍ୱତଃସ୍ଫୂର୍ତ୍ତି । ଜନନୀ ସୃଷ୍ଟିକାରିଣୀ, ସୃଜନ ହିଁ ତାର ପ୍ରଧାନ ଅଭିଳାଷ, ମାତୃତ୍ୱର ପ୍ରେରଣା ଓ ସୃଜନର ସ୍ପୃହା ନାରୀ ମନରେ ମିଳନର ଆଗ୍ରହ ସୃଷ୍ଟିକରେ । ସନ୍ତାନ ଲାଗି ନାରୀ ସ୍ୱାମୀ କାମନା କରିଥାଏ । ତା' ପରେ ପ୍ରଣୟ ସୁଖକୁ ଭୁଲି ସନ୍ତାନର ସୁଖ ଦେଖିବା ପାଇଁ ଓଷା, ବ୍ରତ, ଦେବ ଆରାଧନାରେ ନିଜକୁ ବ୍ୟାପୃତ ରଖେ । ସମ୍ଭୋଗ ଅପେକ୍ଷା ତ୍ୟାଗ ହିଁ ଏ ତା' ପକ୍ଷରେ ବରଣୀୟ । ସନ୍ତାନ ପାଇଁ ଏତେ ବ୍ୟାକୁଳତାର କାରଣ ଅନୁଭବ କରିହେବ, ଜୀବନରେ ଅନ୍ୟାନ୍ୟ ଶୂନ୍ୟତାବୋଧ ଯେତେ ଥିଲେ ବି ସନ୍ତାନର ଶୁଭାଗମନ ଦାମ୍ପତ୍ୟ ଜୀବନରେ ପୂର୍ଣ୍ଣତାର ପ୍ଳାବନ ଖେଳେଇ ଦିଏ । ମଧୁର ଦରୋଟି ବାଣୀ ଆନନ୍ଦର ଉଦ୍‌ବେଳନ ସୃଷ୍ଟିକରେ ।

---

୨୬ । ଗୋଦାବରୀଶ ମହାପାତ୍ର ।

ନାରୀକବର ବନ୍ଧ୍ୟାତ୍ୱ ପ୍ରସଙ୍ଗ ଦୃଷ୍ଟିରେ—

"ସେ ଦରେଷ୍ଟି ବାଣୀ ମଧୁର ଗୁହାଣୀ
ଯା' ଘରେ ନାହିଁ
କ ହେବ କହିତ ହଜାରେ କୁବେର
ବଭୂତ ଥାଇ ।" (୨୭)

ନାରୀକବ ବ୍ରହ୍ମୋଣୀ ମହାତ୍ମାଙ୍କ କବ ମାନସରେ ଏତାଦୃଶ ଚିନ୍ତାଧାରର ପ୍ରତିଫଳନ ସୁସ୍ପଷ୍ଟ । ନାରୀ, ଜାୟା ଓ ଜନନୀ । କିନ୍ତୁ ମାତୃତ୍ୱର ଅଭିବବୋଧ ନାରୀ ପକ୍ଷରେ ଅପରିହାର୍ଯ୍ୟ । ସେଇ ଅଭିବବୋଧର କଥା କେତେଜଣ କବଙ୍କ ଲେଖାରେ ବା ପ୍ରକାଶିତ ! କଥାକାର ଫକୀରମୋହନ 'ଛ ମାଣ ଆଠ ଗୁଣ୍ଠ' ମାଧ୍ୟମରେ ସୃଷ୍ଟିକାମୀ ନାରୀର ବ୍ୟାକୁଳ ହୃଦୟର କେତୋଟି ଦିଗ ପ୍ରତି ଆଲୋକପାତ କରିଛନ୍ତି । କାହ୍ନୁଚରଣଙ୍କ 'କା' ଉପନ୍ୟାସରେ ଏଇ ବୋଧର ପ୍ରକାଶ ଘଟିଛି । ପ୍ରଥମ ବିବାହିତ ସ୍ତ୍ରୀ ଦ୍ୱିତୀୟ ପତ୍ନୀ ଗ୍ରହଣ ପାଇଁ ଅନୁମତି ଦେବା ମୂଳରେ ଗୋଟିଏ କାରଣ ନହିତ । ବରଂ ପତ୍ନୀ ନାରୀର ହୃଦୟ ବକ୍ଷରେ ଅମୃତ ନିର୍ଝରର ସ୍ଫୁରଣ ନ ହେଉ ପଛେ ଆଗନ୍ତୁକ ଶିଶୁର କୋମଳ ଦରେଷ୍ଟିରେ ଗୃହଟି ଝଙ୍କୃତ ହେଉ, ଏଇତ ଅଭିଳାଷ । ଫକୀରମୋହନଙ୍କ ଭାଷାରେ କହିବାକୁ ଗଲେ "ଲୋକବେଳେ ଭାତ ନ ପାଇଲେ ଲୋକେ ଡାଳପଥ ଖେଇବାଇଲା ପରେ ଯାହା'ର ପିଲାଝିଲା କଣ୍ଟା ନାହିଁ ସେ କୁକୁର ପିଲାଟିଏ, ବିରାଡ଼ି ପିଲାଟିଏ କମ୍ବା ଛେଳିଟିଏ ପୋଷି ତାକୁ ଭଲ ପାଏ'' (୨୮) । ଅନ୍ୟର ପିଲା ହେଲେ ବ ସେଥିରେ ମଧ୍ୟ ମାତୃତ୍ୱର ତୃପ୍ତି କଞ୍ଚିତ ମିଳିଥାଏ । ତେଣୁ ଏଇ ମାନବୀୟ ପ୍ରବୃତ୍ତିର ଚେଷ୍ଟା ନେ କବଙ୍କ କବିତାରେ ପ୍ରକାଶିତ ।

କିନ୍ତୁ ଦୁଃଖର ବିଷୟ କେତେଜଣ ପୁରୁଷ ଲେଖକ ଏଇ ଅନୁଭବର ପୃଷ୍ଠପୋଷକତା କରିଥିଲେ ବ ନାରୀ ଲେଖନୀ ଏ ଦିଗରେ ପର୍ଯ୍ୟାପ୍ତ ନୁହେଁ । ପୁରୁଷମାନେ ମାତୃତ୍ୱର ଅଭିବବୋଧକୁ ଯେପରି କାବ୍ୟିକ ଦୃଷ୍ଟିରେ ଅନୁଭବ କରିଛନ୍ତି, ପର୍ଯ୍ୟାପ୍ତ ସମ୍ଭାବନା ଥିଲେ ବ ନାରୀ ସେପରି କରିନାହିଁ । ହୁଏତ ନାରୀକବଙ୍କଦ୍ୱାରା ଏହା ଚରମ ସାର୍ଥକତା ଲାଭ କରିପାରିଥାନ୍ତା । ଏହା ଆପଣାର ଅନୁଭବ ହେଲେ ବ ଏଥିପ୍ରତି ଲେଖିକାମାନଙ୍କର ଦୃଷ୍ଟି ଖୁବ୍ କମ୍ ।

୨୭ । ବନ୍ଧ୍ୟାପ୍ରସଙ୍ଗ ସଙ୍କଳନ—କୁନ ଝିଅ—ପୃ-୩୪୦ ।
୨୮ । ଫକୀରମୋହନ ସେନାପତି—ଛ'ମାଣ ଆଠଗୁଣ୍ଠ—ପୃ-୫୪ ।

ବ୍ରହ୍ମୋଶୀ ମହାନ୍ତ, ମାତୃତ୍ୱର ଅସ୍ତବବୋଧ ଓ ସନ୍ତାନ ପ୍ରାପ୍ତିର ବ୍ୟାକୁଳତାକୁ ଯେପରି ତାଙ୍କ କବିତାରେ ସ୍ପଷ୍ଟତର ଓ ମର୍ମସ୍ପର୍ଶୀ କରି ପ୍ରକାଶ କରି ପାରିଛନ୍ତି ସେପରି ସଫଳତାର ସୀମାବଳୟକୁ ସ୍ପର୍ଶ କରିବାପାଇଁ ଅନ୍ୟ କେହି ସାର୍ଥକ ପଦକ୍ଷେପ ନେଇଥିବା ଜଣାଯାଏନା, ତାଙ୍କର 'ଏକ ଆତ୍ମା ଓ ଭିନ୍ନ ସଙ୍ଗ' କବିତାଟି ଏ ଦିଗରେ ଏକ ଉତ୍କୃଷ୍ଟ ଉଦାହରଣ। ନାରୀ ମନର ଏଇ ଅତୃପ୍ତ ବସ୍ତୁ ସମୂହରେ ତୃପ୍ତିର ସନ୍ତୋଷ ଲଭନ୍ତରେ ସ୍ୱପ୍ନ ଜଗତରେ । ଅବଚେତନ ମନରେ ରୁଦ୍ଧ ଯାଇଥିବା କାମନାକୁ ଚରିତାର୍ଥ କରେ କଳ୍ପନା। ତେଣୁ କଳ୍ପନା କୁମାର ପିଠିପଛୁ ଧାଇଁ ଆସି ଆବେଦନ କରେ "ମୋତେ ଗେଲ କର, କୋଳ କର, ଆଦର କର—ଏତେଦିନ ହେଲା ମୋତେ ଭୁଲି ସତେ ରହିଚ କିପରି". (୨୯) ଶିଶୁର ମନକୁଆଁ ଏ ଅଳରେ ନାରୀଙ୍କ ଚେଇଁ ଉଠିବା ଓ ସୁପ୍ତ ମାତୃତ୍ୱ ଜାଗ୍ରତ ହେବା ନିହାତି ସମ୍ଭବ। ତେଣୁ ପରମୁହୂର୍ତ୍ତରେ କବି ଆତ୍ମୋକ୍ତିରେ ପ୍ରକାଶ କରିଛନ୍ତି—"ବିପୁଳ ଆବେଗେ ତାକୁ ଟାଣି ନେଇ କୋଳ ଭିତରକୁ ବୁକୁରେ ଜଡାଇ ଧରି ବାରମ୍ବାର ଚୋକ ତାରେ ଦେଲି" (୩୦)।

କୌତୁକପ୍ରାଣ ଶିଶୁପ୍ରତି ମାନବୀୟ ମନର ସ୍ପର୍ଶ ଲାଳସା ଅଦ୍ଭୁତ। ଏହା ସମୟକ୍ରମେ ଏତେ ଘନୀଭୂତ ହୋଇଯାଏ ଯେ ତାକୁ ଅମାନ୍ୟ କରିବା ମଣିଷ ପକ୍ଷରେ ସମ୍ଭବ ହୁଏନ। ତେଣୁ ବୋଧହୁଏ ଦୁଷ୍ମନ୍ତ ଭରତକୁ ପୁତ୍ର ବୋଲି ଚିହ୍ନିବା ପୂର୍ବରୁ ତାର କୌତୁକପ୍ରଦ ସାହସ ଦେଖି ତାଙ୍କ ମନରେ ଆନନ୍ଦ ଉଚ୍ଛଳ ହେବା ସଙ୍ଗେ ସଙ୍ଗେ ସ୍ପର୍ଶଲାଳସାର ଅଦ୍ଭୁତ ଆକର୍ଷଣ ଚେଇଁ ଉଠିଥିଲା। ତେଣୁ ପିତା ଦୁଷ୍ମନ୍ତ ~~ମନେ~~ ମନେ ଚିନ୍ତା କରିଥିଲେ—

"ଧୂଳିକନ ଯାର ଏତେ ଧୂସରକର
ସ୍ମରଣ କେତେ ମଧୁର
ଚରଣ ଲାଳସା ଲଗିଛି ଦର୍ଶନ
ସୁଖ କରିବାକୁ ଦୂର (୩୧)।

---

୨୯-। ୩୦। ବ୍ରହ୍ମୋଶୀ ମହାନ୍ତ—'ଏକ ଆତ୍ମା ଭିନ୍ନ ସଙ୍ଗ' ଝାରସୁଗୁଡ଼ା ଝଙ୍କାର ୧୯୭୬।

୩୧। ଗଙ୍ଗାଧର ମେହେର—ପ୍ରଣୟ ବଲ୍ଲରୀ।

ଏଇ ସ୍ପର୍ଶ ଆତୁରତା ପ୍ରିୟାର ସାନ୍ନିଧ୍ୟ ସ୍ପର୍ଶଠାରୁ ଭିନ୍ନ । ପ୍ରିୟାର ସ୍ପର୍ଶ ଓ କନ୍ୟାର ସ୍ପର୍ଶ ଭିତରେ ତାରତମ୍ୟ ଯଥେଷ୍ଟ । ଏହି ଅଭିଜ୍ଞାନ ପ୍ରତିଫଳିତ ହୋଇଛି ବ୍ରଜନାଥ ରଥଙ୍କ ନିଜସ୍ୱ ସଂଳାପ କବିତା ଗ୍ରନ୍ଥର 'ଦୁଇଟି ଚୁମ୍ବନ' କବିତାରେ । କିନ୍ତୁ ଏଇ ସ୍ପର୍ଶଲାଳସା-ଅନୁଭବର ଶେଷ ଚରମ ସାର୍ଥକତା ଲାଭ କରିଛି କବି ବ୍ରହ୍ମୋତ୍ତରୀଙ୍କ ଲେଖନୀରେ । ପୂର୍ବୋକ୍ତ କବିତାରେ ସ୍ୱାମୀଙ୍କ କଣ୍ଠରୁ ପ୍ରତିବାଦର ସ୍ୱର ଶୁଣି ନାରୀର ମାନସିକ ପ୍ରତିକ୍ରିୟାକୁ ଯେତିକି ସଫଳତାର ସହ ରୂପାୟିତ କରିଛନ୍ତି ସେତିକି ନିଖୁଣତାରେ ଫୁଟାଇଛନ୍ତି ସ୍ପର୍ଶ-ପିପାସାର ସଜଳ ପ୍ରତିଛବି ।

ଆସିଥିଲା ଶିଶୁ ରୂପେ କୋଳ ମୋର ପୂର୍ଣ୍ଣ କରିବାକୁ
କିନ୍ତୁ ତୁମେ ତାରେ ଫିଙ୍ଗିଦେଲ କାନ୍ଦି କାନ୍ଦି ଗଲାଗଲା ହାୟ ।
ଆଉ କି ସେ ଫେରିବନି, ଅମୃତର ସରଣୀରେ ଏକ ଅନ୍ତରାୟ ।

ଅବଚେତନ ମନରେ ହେଲେ ବି ନାରୀକବି ବ୍ରହ୍ମୋତ୍ତରୀଙ୍କ ଏଇ ଆତ୍ମୋକ୍ତି ମାଧ୍ୟମରେ ପ୍ରକାଶିତ ହୋଇଛି ମାତୃତ୍ୱର ଅଭାବବୋଧ । କେତେଜଣ ଓଡ଼ିଆ ନାରୀ କବି ଏଇ ଅଭାବ ବୋଧର ଶେଷ ନିଃସଙ୍କୋଚରେ ପ୍ରକାଶ କରି ପାରିଛନ୍ତି ? ନିଜକୁ ପ୍ରତାରିତ ନକରି ସତ୍ୟକୁ ପ୍ରକାଶ କରିବାରେ କୁଣ୍ଠାବୋଧ କରି ନାହାନ୍ତି ଶ୍ରୀମତୀ ବ୍ରହ୍ମୋତ୍ତରୀ । ସତ୍ୟ ପ୍ରକାଶ ହିଁ କବିର ଧର୍ମ । ସତ୍ୟ ପ୍ରତି ବିଶ୍ୱସ୍ତ ହେବା ଓ ସତ୍ୟ ପାଇଁ ସାଧନା କରିବା କବିର କର୍ମ । ଏଇ ଦୃଷ୍ଟିରୁ ବ୍ରହ୍ମୋତ୍ତରୀଙ୍କୁ ଚିଲିର ନାରୀ କବି ଗାବ୍ରିଏଲାଙ୍କ ସହିତ ତୁଳନା କରାଯାଇ ପାରେ । ଗାବ୍ରିଏଲାଙ୍କ ପ୍ରଣୟୀ ୟୁରେତାଙ୍କ ଆକସ୍ମିକ ମୃତ୍ୟୁପରେ ସନ୍ତାନ ସନ୍ତତି ପୂର୍ଣ୍ଣ ଗୋଟିଏ ସୁଖୀ ପାରିବାରିକ ଜୀବନର ସ୍ୱପ୍ନ ତାଙ୍କ ମନରୁ ହଠାତ୍ ମିଳେଇ ଯାଇଛି । ମା' ହେବାର ବ୍ୟର୍ଥ ପିପାସାକୁ ସେ "Poem of Son" କବିତାରେ ମର୍ମବୋଧକ ଭାଷାରେ ରୂପ ଦେଇଛନ୍ତି ।

"A son, a son, a son !
I wanted a son of yours
And mine, in those
distant days of morning bliss,
When mine bones would
trumble at your least murmer,
And my brow would glow
with a radiant mist

ଅନ୍ତଃସତ୍ତ୍ୱା ନାରୀ ଅନାଗତ ଶିଶୁର ସ୍ୱରୂପ କଳ୍ପନା କରିଥାଏ ଆତ୍ମହରା । ଆଜ ସେଇ ଆଗାମୀ ସୁଦିନକୁ ଅପେକ୍ଷା କରେ ଯେଉଁଦିନ କି ସେ ନିଜର ରକ୍ତମାଂସ ଜୀବନ ଦେଇ ଗଢ଼ିଥିବା ଶିଶୁଟିକୁ ଖୁବ୍ ନିକଟରେ ପାଇବ । କିନ୍ତୁ ଜନନୀ ହେବାର ସାର୍ଥକତାରୁ ସେ ଯଦି ବଞ୍ଚିତ ହୁଏ ତେବେ ତା'ର ଯୌବନ ପରିପୁଷ୍ଟ ଶରୀରକୁ ବ୍ୟର୍ଥ ବୋଧ କରେ । ଏଇ ବ୍ୟର୍ଥତାକୁ ବରଣ କରି ନେବାପାଇଁ ନାରୀ କବି ଗାବ୍ରିଏଲା ରାଜି ନୁହନ୍ତି । ତେଣୁ ସେଇ କବିତାରେ ସେ ସ୍ପଷ୍ଟ ପ୍ରକାଶ କରିଛନ୍ତି ।

> "Oh, no ! How could God let
> the bud of my breasts go dry when,
> He himself so swelled my
> girth ? I feel my breasts growing,
> Rising like water lily in a
> wide pool, noiselessly "

ନାରୀ ଜୀବନର ସାର୍ଥକତା ସମ୍ଭୋଗରେ ନୁହେଁ, ତ୍ୟାଗରେହିଁ ମୂର୍ତ୍ତିମନ୍ତ । ସନ୍ତାନର ମଙ୍ଗଳପାଇଁ ସମସ୍ତ ସମ୍ଭୋଗ ସେ ତ୍ୟାଗ କରିବାକୁ ପ୍ରସ୍ତୁତ । ନାରୀ କବି ଗାବ୍ରିଏଲା ନିଜକୁ ମା' ସ୍ଥାନରେ ରଖି ସନ୍ତାନର ମଙ୍ଗଳ·ପାଇଁ ମାତୃତ୍ୱାନୁ-ଭବମ ସମ୍ପର୍କର ସୂଚନା ଦେଇଛନ୍ତି । ଗର୍ଭବତୀ ନାରୀ ପକ୍ଷରେ ସ୍ୱାମୀର ସ୍ପର୍ଶ କେବଳ ମା ପାଇଁ ନୁହେଁ ସନ୍ତାନ ପାଇଁ ମଧ୍ୟ ଅମଙ୍ଗଳ । ଆଗନ୍ତୁକ ସନ୍ତାନର ମଙ୍ଗଳପାଇଁ ସ୍ୱାମୀକୁ ବୁଝାଇ କହିଛନ୍ତି—

> Husband, do not embrace me.
> You caused it to rise
> from the depth of me like water lily.
> Let me be like still water.

ଏତାଦୃଶୀ କ୍ଷେତ୍ରର ମାତୃତ୍ୱାନୁଭୂତି ପାଇଁ ସେ ସମୁଦାୟ ବିଶ୍ୱ ସାହିତ୍ୟରେ ସମ୍ମାନଜନକ ସ୍ଥାନର ଅଧିକାରିଣୀ । ମାତୃତ୍ୱର ଅଭାବବୋଧ ତାଙ୍କ ପାଖରେ ଏତେ ଗଭୀର ଯେ ସେ ଅବୈଧ ସନ୍ତାନକୁ ମଧ୍ୟ ସ୍ନେହ ଓ ସହାନୁଭୂତି ଦେବାକୁ ଭୁଲି ନାହାନ୍ତି ।

ଭଲକରି ନିରୀକ୍ଷଣ କଲେ ଜଣାଯାଏ ଏଇ ଅଭାବବୋଧ କେବଳ ଗାବ୍ରିଏଲ୍ ବା ବ୍ରହ୍ମର୍ଷିଙ୍କର ନୁହେଁ ଏହା ସମୁଦାୟ ଜନନୀ ଜାତିର ଏକ ମାନସିକ ପ୍ରତିକ୍ରିୟା । ସନ୍ତାନର ଅଭାବରେ ନାରୀର ପ୍ରାଣ ଯେପରି କଳପି ଉଠେ ତା'ର ଅବର୍ତ୍ତମାନରେ ଜନନୀ-ହୃଦୟ ସେପରି ବିଚଳିତ ହୋଇଥାଏ । ସନ୍ତାନର ସାମୟିକ ଅନୁପସ୍ଥିତି ଜୀବନକୁ ଚିନ୍ତାଗ୍ରସ୍ତ କରେ । ସେଥିପାଇଁ କୃଷ୍ଣଙ୍କୁ ବଣକୁ ଛାଡ଼ି ଯଶୋଦା ଅସ୍ଥିରତା ଅନୁଭବ କରନ୍ତି । କୃଷ୍ଣ ନିହାତି ଅଚହ୍ୟାଣି । ଦେବକୀଙ୍କ ଅଷ୍ଟମ ଗର୍ଭର ସନ୍ତାନ, ଏଇ କୃଷ୍ଣଙ୍କ ଉପରେ କାହାରି କୁଦୃଷ୍ଟି ପଡ଼ିବ ବୋଲି ଯଶୋଦା ଖୁବ୍ ସତର୍କ । ତାଙ୍କର ନାକ, କାନଫୋଡ଼ ଦେଇଛନ୍ତି, କିନ୍ତୁ ରଙ୍କିଣୀ କାଟଛଣୀ ପିନ୍ଧାଇ ନାହାନ୍ତି । ସନ୍ତାନକୁ ସଜାଇବାରେ ମା'ର ଯେଉଁ ପରିତୋଷ ସେ ଲୋଭକୁ ତ୍ୟାଗ କରିଛନ୍ତି । କାଳେ ଡାଆଣୀର ଦୃଷ୍ଟି ପଡ଼ିଯିବ, ଏଥିପାଇଁ ନିର୍ଧନ ସଙ୍ଗାଳ, ଅନ୍ଧର ଲଉଡ଼ି, ନୟନପ୍ରତିମା କୃଷ୍ଣଙ୍କୁ ବଣକୁ ଛାଡ଼ିବାକୁ ସେ ନାରାଜ । କୃଷ୍ଣ ଡରକୁଳା, ରାତିରେ ମା' କୋଳରେ ଶୋଇଥିଲେ ବି ଚମକିପଡି ମା'ର ଗଳାରେ ନନ୍ଧହୋଇ ଡାକ ଛାଡ଼ନ୍ତି । କେତେବେଳେ ବା ଦୁଃସ୍ୱପ୍ନ ଦେଖି ଚିତ୍କାର କରି ଉଠନ୍ତି (୩୨) । ଏପରି ଭୟାଳୁ ସନ୍ତାନକୁ ସାମୟିକ ହେଲେ ବି ପାଖଛଡ଼ା କରିବାପାଇଁ ଖୁବ୍ ଶଙ୍କାକୁଳା ହୋଇ ପଡ଼ିଛନ୍ତି ଯଶୋଦା । ଲବ କୁଶଙ୍କୁ ଛାଡ଼ି ସୀତା ବେଶୀ ସମୟ ଆଶ୍ରମ ବାହାରେ ରହିପାରି ନାହାନ୍ତି । ଏପରିକି ସ୍ନାନପାଇଁ ସନ୍ତାନ-ମାନଙ୍କ ପାଖୁ ଅନ୍ତର ହେଲେ ବି ଜଳ-ଜରଜର ବସନରେ ଅତି ଉଦ୍‌ବେଗରେ ସତ୍ୱର ଲବକୁଶଙ୍କ ପାଖକୁ ଧାଇଁ ଆସନ୍ତି ସୀତା (୩୩) ।

---

୩୨ । ନିଶାକାଳେ ମୋର କୋଳେ ଶୋଇଥାଉ ଶ୍ରମବଳେ
ସ୍ୱପନରେ ଦେଖି କସ କସ
ମା ବୋଲି ଚମକି ପଡ଼ୁ କଣ୍ଠେ ଦୁଇଭୁଜ ଭିଡ଼ୁ
ପୁଣି ଶୋଉ ଯୋଡ଼ି ହୋଇ ବାସ
(ଭକ୍ତ ଚରଣ—ମଥୁରା ମଙ୍ଗଳ—ଚତୁର୍ଥ ଛାନ୍ଦ—୮ ପଦ)

୩୩ । ସ୍ନାନ ପାଇଁ ଯିବେ ଥରେ ମାତର, ହୁଅନ୍ତି ଯଦ୍ୟପି ପାଶୁଁ ଅନ୍ତର,
ଜଳ-ଜରଜର ବସନେ ବେଗେ ଧାଇଁ ଆସିଥାନ୍ତି ଅତି ଉଦ୍‌ବେଗେ
ପରାଣ ହେଉଥାଏ ଚଞ୍ଚଳ, ଚୁମ୍ବିବାକୁ ସୁତ-ମୁଖ-କମଳ ।
(ଗଙ୍ଗାଧର ମେହେର—ତପସ୍ୱିନୀ—୧୦ମ ସର୍ଗ—୨ ପଦ)

ସନ୍ତାନ-ସନ୍ତତି ଯେତେ ବଡ଼ ହେଲେ ବି ଜନନୀ ଦୃଷ୍ଟିରେ ସେମାନେ ଶିଶୁ । ଶିଶୁ ପୁତ୍ରଙ୍କୁ ଛାଡ଼ି ପିତା ଯେମିତି ଅସ୍ଥିର ହେଉଥିଲେ ରାଜସିଂହାସନରେ ଅଧିଷ୍ଠିତ ହେବାକୁ ଯାଉଥିବା ଯୁବକ ପୁତ୍ର ରାମଚନ୍ଦ୍ରଙ୍କୁ ବଣକୁ ପଠାଇ କୌଶଲ୍ୟା ତା'ଠାରୁ କୌଣସି ଗୁଣରେ କମ୍ ବିଚଳିତା ହୋଇ ନାହାନ୍ତି । ମାସ ପରେ ମାସ ବିତି ଯାଉଛି, ରାମଚନ୍ଦ୍ର ଫେରୁ ନାହାନ୍ତି । ଶୀତର ଶୀତଳତା, ଓ ବର୍ଷାର ଆର୍ଦ୍ରତା ସବୁ ସେ ବଣରେ ସହ୍ୟ କରୁଛନ୍ତି । ରାଜରାଣୀ କୌଶଲ୍ୟାଙ୍କର ମାତୃହୃଦୟ ଧରିବାରର ସଂବେଗ ମଧ୍ୟରେ କପରି ବା ଶାନ୍ତି ପାଇ ପାରିବ ! ରାମଚନ୍ଦ୍ରଙ୍କ ଅନୁପସ୍ଥିତି ତାଙ୍କର ସ୍ବର୍ଣ୍ଣ-ସଂସାରରେ ବିଭୀଷିକା ଭୁଲି କାମ କରୁଛି । ପ୍ରତ୍ୟେକ ମୁହୂର୍ତ୍ତରେ ସେ ସ୍ମରଣ କରିଛନ୍ତି ରାମଚନ୍ଦ୍ରଙ୍କୁ(୩୪) ଅନୁପସ୍ଥିତି ଯେତେ ସାମୟିକ ହେଲେ ବି ପିତାମାତାଙ୍କ ପକ୍ଷରେ ଅସହ୍ୟ । ପର୍ବପର୍ବାଣୀରେ ସନ୍ତାନମାନଙ୍କ ଅନୁପସ୍ଥିତି ପିତାମାତାଙ୍କ ମନରେ ବିରାଗ ଭରିଦିଏ । ନୀଳକଣ୍ଠଙ୍କ କୋଣାର୍କ କାବ୍ୟରେ ଏହାର ପ୍ରତିଫଳନ ସ୍ପଷ୍ଟ । ମାତୃ ହୃଦୟର ଆବେଗ ଓ ମାନସିକ ଆନ୍ଦୋଳନର ଚିତ୍ର କବି ନୀଳକଣ୍ଠ ଅତି ସ୍ୱାଭାବିକଭାବେ ବ୍ୟକ୍ତ କରିଛନ୍ତି କାବ୍ୟର କେତୋଟି ପଂକ୍ତିରେ । କୁମାରପୂର୍ଣ୍ଣିମା ରାତି । ପ୍ରାକୃତିକ ବିପର୍ଯ୍ୟୟ ହେତୁ ବିଦେଶଗତ ପୁତ୍ରମାନେ ନିଜ ଘରକୁ ଫେରି ପାରିନାହାନ୍ତି । ଏତେ ବଡ଼ ଗୋଟିଏ ପର୍ବରେ ପିଲାମାନଙ୍କର ଘରକୁ ନ ଫେରିବା ଦେଖି ମା'ମାନେ ନିଶ୍ଚୟ ବ୍ୟସ୍ତ ହେଉଥିବେ । ଏହି ଭାବନାରେ କବିର ମନ ଚଞ୍ଚଳ ।

ଯଦିଓ ପିଲାମାନଙ୍କ ସହିତ କବିଙ୍କ ସମ୍ପର୍କ ଶିକ୍ଷକ ଓ ଛାତ୍ରର ସମ୍ବନ୍ଧ ସୀମା ମଧ୍ୟରେ ଆବଦ୍ଧ, ତଥାପି ଅଭିବ୍ୟକ୍ତିରେ ପିତୃହୃଦୟର ଉତ୍କଣ୍ଠା

---

୩୪ । ଆଦ୍ୟ ମଗୁଶିର ମାସ କାକର ପଡ଼େ ଆଶେଷେ
ଶୀତଳ ପବନ ବହେ ଘନ ଘନ, ମୋ ପୁତ୍ର କରିବ କିସ ଲୋ କୋଇଲି
ପୁଷମାସେ ବଡ଼ଶୀତ କଷ୍ଟ ଦିଏ ଅପ୍ରମିତ
ବିନା ବସନରେ ବୃକ୍ଷ ବକଳରେ କି ଦୁଃଖ ନ ହେବ ଜାତ ଲୋ କୋଇଲି ।
(ବାରମାସୀ କୋଇଲି)

ପ୍ରକାଶିତ । ସରଳ ଓ ସ୍ୱାଭାବିକ ଭାଷାରେ ଏଇ ଦୃଷ୍ଟିଭଙ୍ଗିର ଉଲ୍ଲେଖ ଘଟିଛି । (୩୫)

ଯେଉଁ ପିତାମାତା ପୁତ୍ରକନ୍ୟାଙ୍କ ସାମୟିକ ସ୍ୱଚ୍ଛନ୍ଦ ଇଚ୍ଛା କରନ୍ତି ନାହିଁ, କନ୍ୟାର କୈଶୋର ନ ଯାଉଣୁ ବିବାହ ଦେବା କଥା ଚିନ୍ତା କରି ଦୁଃଖରେ କାତର ହୁଅନ୍ତି ସେଇମାନେ ପୁଣି ବହୁ ସମୟରେ ବିଧିର ବିଡମ୍ବନା ହେତୁ କନ୍ୟା ନପୁତ୍ରର ଅକାଳ ଇଙ୍ଗିତରେ ସନ୍ତାନବଧୂର ଜୀବନ ବିତେଇବାପାଇଁ ବାଧ୍ୟ ହୁଅନ୍ତି । ମାନବ ପକ୍ଷରେ ଏଇ ମୃତ୍ୟୁର ଚାପ ଅତି ଭୟଙ୍କର । ଜୀବନର ଅପର ପାର୍ଶ୍ୱ ମୃତ୍ୟୁ ଏକ ନିଷ୍ଠୁର ସତ୍ୟ । ପିତାମାତାଙ୍କ ପୂର୍ବରୁ ସନ୍ତାନ ସନ୍ତତିଙ୍କ ବିୟୋଗ ସେମାନଙ୍କ ପକ୍ଷରେ ଅତି ଅସହ୍ୟ । କେବଳ ମାନବ ସମାଜ କାହିଁକି ଇତର ପ୍ରାଣୀ-ଜଗତରେ ମଧ୍ୟ ଏହାର ଦୃଷ୍ଟାନ୍ତ ବିରଳ ନୁହେଁ । ଏପରି ଅନେକ ପଶୁପକ୍ଷୀ ଅଛନ୍ତି ଯେଉଁମାନେ କି ନିଜର ଛୁଆଙ୍କୁ ହରାଇ ଅବୋଧ ଭାଷାରେ ବିଳାପ କରନ୍ତି । ତେଣୁ ବୁଦ୍ଧିଜୀବୀ ମାନବ ପକ୍ଷରେ ମୃତ୍ୟୁର ଯନ୍ତ୍ରଣା ଯେ ସର୍ବାଧିକ ଦୁଃଖଦାୟକ ଏଥିରେ ଅସ୍ୱାଭାବିକତା କିଛି ନାହିଁ ।

ଆତ୍ମୀୟ ସ୍ୱଜନ, ଜ୍ଞାତି, କୁଟୁମ୍ବ ସମସ୍ତଙ୍କପାଇଁ ମନୁଷ୍ୟର ସ୍ନେହୀ ମନ ବିଳପି ଉଠେ । ସମୟକ୍ରମେ ସବୁ ଦୁଃଖରେ ପୁଣି ପ୍ରଲେପ ଲାଗେ; କିନ୍ତୁ ପୁତ୍ର-କନ୍ୟାଙ୍କ ବିୟୋଗରେ ମା'ର ମନ ଚିରଦିନ ଅଶ୍ରୁ ବର୍ଷଣ କରୁଥାଏ । ଭକ୍ତ କବି ଯଶୋବନ୍ତ ଦାସ 'ଟୀକା ଗୋବିନ୍ଦଚନ୍ଦ୍ର'ରେ ଏହି କଥାଟି ଉଲ୍ଲେଖ କରିଛନ୍ତି । ରାଜପୁତ୍ର ଗୋବିନ୍ଦ ଥାଳ ଧରି ଯୋଗୀ ହୋଇ ଜୀବନ କଟାଉ ପଛକେ ମା' ଗୃହେଁ ସେ କେବଳ ନିଶ୍ଚିନ୍ତ । ପୁତ୍ରର ଜୀବନ ପାଖରେ ତା'ର ଧନ, ମାନ, ସମ୍ପତ୍ତି ଓ ସମ୍ମାନ କିଛି ବଡ଼ ନୁହେ । ତେଣୁ ମା' ପୁଅକୁ ଯୋଗୀ ହେବାକୁ ବାଧ୍ୟ କରିଛି, ବିଭିନ୍ନ ଉପଲକ୍ଷ ଦେଇ ବୁଝାଇଛି ।

"କେ କାହାର ବାପ କାହାର କୁମର
କେ କାହାର ଧନ ବାର ।
ମାତା ଗର୍ଭଧାରୀ କରିଛେ କାହାର ବଞ୍ଚିଥିବା ଯୁଗାନ୍ତର ।"

---

୩୫ । ଲୁଗାରେ ଦଳଣୀ ଲଗାଇ
ଗୃହିଁଥିବେ ଜନନୀ
ପିଠାପଣା ଖାଉ ନ ଥିବେ
ସୁଖେ ଆଜ ଭଗିନୀ ।
(ନୀଳକଣ୍ଠ ଦାଶ — କୋଣାର୍କେ)

କବି ଦାମୋଦର ମିଶ୍ରଙ୍କ 'ମାତା' କାବ୍ୟ ଏ କ୍ଷେତ୍ରରେ ଏକ ଆଲୋଚ୍ୟ ଉପାଦାନ । ସାର୍ବଜନୀନ ଜଣେ ଶାଶ୍ୱତ ଜନନୀର ମୂର୍ତ୍ତି କବି ଏଠାରେ ରୂପାୟିତ କରିଛନ୍ତି । ଜନ୍ମଠାରୁ ବଡ଼ ହୋଇ ପ୍ରତିଷ୍ଠିତ ହେବା ପର୍ଯ୍ୟନ୍ତ ପୁତ୍ରକୁ କେନ୍ଦ୍ର କରି ଗଢ଼ି ଉଠିଥିବା ଜନନୀର ସମଗ୍ର ଚିନ୍ତାଧାରାର ଏକ ବାସ୍ତବ ରୂପ ପ୍ରଦାନ କରିଛନ୍ତି କବି । ଅସମୟରେ ପୁତ୍ର କନ୍ୟାଙ୍କର ବିୟୋଗ ମାତୃହୃଦୟରେ ଯେଉଁ ଆବର୍ତ୍ତନ ସୃଷ୍ଟି କରେ ତାହାର ଏକ ମାର୍ମିକ ପ୍ରତିଧ୍ୱନି ତୋଳିଛନ୍ତି କବି 'ମାତା' କାବ୍ୟରେ—

ଖିଆଇଦଣ୍ଡେ ଦଧି ମନ୍ଥନ ପ୍ରାୟେ ମାତା ହୃଦୟ
ଦୁଃସହ କଷଣେ ନିରବେ ହେଉଥାଏ ଅଥୟ ।
ଆହାରେ ! ଅକାଳେ ତନୟ ଯେବେ ତେଜେ ଜୀବନ
ଆଶା-ପାଟଡ଼ୋର ମାତାର ଛିଡ଼ିଯାଏ ବନ୍ଧନ ।
( ଦାମୋଦର ମିଶ୍ର—'ମାତା' )

ବେଦ ଉପନିଷଦ ଇତ୍ୟାଦି ପ୍ରାଚୀନ ଭାରତୀୟ ଗ୍ରନ୍ଥମାନଙ୍କରେ ଏଭଳି ଦୃଷ୍ଟାନ୍ତ ପ୍ରଚୁର । ନଚିକେତାଙ୍କ ପିତା ଅନ୍ୟମନସ୍କ ଥାଇଁ ପୁତ୍ରକୁ ଯମ ଦେବତାଙ୍କଠାରେ ସମର୍ପଣ କରିବାର ପ୍ରତିଶ୍ରୁତି ଦେବାପରେ ନଚିକେତା ଯମଙ୍କ ପାଖକୁ ଯିବାପାଇଁ ଉଦ୍ୟତ ହେବାରୁ ରାଜା ସ୍ଥିର ମସ୍ତିଷ୍କରେ ଯେତେବେଳେ ପୁତ୍ର ବିୟୋଗ ବିଷୟ ଚିନ୍ତା କରିଛନ୍ତି ସେତେବେଳେ ତାଙ୍କ ପ୍ରାଣ ଅଧୀର ହୋଇ ଉଠିଛି । ଯଦିଓ ପୂର୍ବରୁ ସେ ତାଙ୍କର ସମସ୍ତ ବିଷୟ ବିତ୍ତ ନିଃସଙ୍କୋଚରେ ଦାନ କରିଥିଲେ ତଥାପି ନିଜ ପୁତ୍ରକୁ ଯମାଳୟକୁ ପଠାଇବାରେ ତାଙ୍କ ମନରେ ସଚେତନ ଆପତ୍ତି ଦେଖା ଉଠିଛି । ପୁତ୍ର-ଦାନର ପ୍ରତିଶ୍ରୁତି ଭଙ୍ଗ କଲେ ଯଦିଓ ଯଜ୍ଞର ସମସ୍ତ ପୁଣ୍ୟ ନଷ୍ଟ ହେବ, ତଥାପି ମମତାବିଷ୍ଟ ପିତା ସେଥିପାଇଁ ଶଙ୍କିତ ହୋଇ ନାହାଁନ୍ତି । ପୁଣ୍ୟବଦଳରେ ପୁତ୍ରର ଜୀବନକୁ ମୂଲ୍ୟ ଦେଇଛି । ପୁତ୍ରର ଜୀବନରକ୍ଷା ହିଁ ତା'ର ପରମ ତୃପ୍ତି ଓ ପରମ ପୁଣ୍ୟ । ଏଇ ଭାବନା ପିତାର ସଚେତନ ମନକୁ ଗ୍ରାସ କରିଛି ।

ସନ୍ତାନ-ସନ୍ତତିଙ୍କର ମଙ୍ଗଳପାଇଁ ପିତାମାତା ଆପଣାକୁ ତିଳତିଳ କରି ତ୍ୟାଗ କରନ୍ତି । ଏପରିକି ସେମାନଙ୍କ ଜୀବନ ରକ୍ଷାପାଇଁ ନିଜର ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିଥାନ୍ତି । ଇତିହାସରେ 'ବାବର' ଓ 'ହୁମାୟୁନ' ଜୀବନ କଥା ଏହାର ପ୍ରକୃଷ୍ଟ ନିଦର୍ଶନ । ବୈକୁଣ୍ଠନାଥଙ୍କ 'ମୃତ୍ତିକା ଦର୍ଶନ' କବିତାରେ

ଏହାର ପ୍ରତିଫଳନ ସ୍ପଷ୍ଟ । ପୁତ୍ର-ବିଧୁର ପିତାର ମାନସିକ ପ୍ରତିକ୍ରିୟାର ଚିତ୍ର ଏଥିରେ ପ୍ରଦତ୍ତ ।

"କହିଥାନ୍ତୁ ଯେବେ ବାବୁ ଫିଟାଇ ତୋ ପାଟି
ଢାଳିଦେଇଥାନ୍ତା ରକ୍ତ ତା' କଳିଜା କାଟି;
କେଉଁ ସଜ ଆସିଗଲୁ ନ ପାରିଲୁ ଜାଣି
କାନ୍ଦଇ ଜନମା ତେଣୁ କରେ ଶିର ହାଣି ।"

ପରିବାରର ଅବିନଶ୍ୱର ସମ୍ପଦ, ସନ୍ତାନ-ସୁଖର ସୁରକ୍ଷାପାଇଁ ପିତା-ମାତା ସେମାନଙ୍କର ସମସ୍ତ ଶକ୍ତି ପ୍ରୟୋଗ କରିଥାନ୍ତି, ପ୍ରବାସୀ ପିତା ଯଦି ପୁତ୍ର ଅସୁସ୍ଥତାର ଖବର ପାଏ, ଝଡ଼ ବର୍ଷା ନ ମାନି ଖରା ଶୀତକୁ ଉପେକ୍ଷା କରି ତା'ର ଜୀବନ ରକ୍ଷାପାଇଁ ବ୍ୟଗ୍ରତା ପ୍ରକାଶ କରେ ! ସେତେବେଳେ ପିତୃହୃଦୟ ଯେଉଁ ଆବେଗ ଆଲୋଡ଼ନରେ କମ୍ପିତ ହୁଏ ତା'ର ସ୍ପଷ୍ଟ ଉଲ୍ଲେଖ ପଲ୍ଲୀକବି ନନ୍ଦକିଶୋରଙ୍କ 'ବାଟୋଇ ଓ ନାଉରିଆ' କବିତାରେ ପ୍ରତିଫଳିତ । ପୁତ୍ରର ଆତ୍ମରକ୍ଷାପାଇଁ ପ୍ରତିଜ୍ଞାବଦ୍ଧ ପିତାର ମାନସିକ ଉଦ୍‌ବେଗ ଏଠି ମର୍ମସ୍ପର୍ଶୀ କାବ୍ୟିକ ଭାଷାରେ ପ୍ରକାଶିତ ।

"କୁଳର ଅଙ୍କୁର ନୟନ ପିତୁଳା ଅନ୍ଧ ନଉଡ଼ି ମୋହର
ଏକୋଇର ବଳା ଶଶିକେସନ ମୋ କରିଅଛୁ ତାକୁ ଜର ।
ମାଆ ତା'ର ହୋଇ ବାଇଆଣୀ ପରି କଲଣି ଶନପୁ ପଡ଼ିର
ବସିଲା ଠାବରୁ ଉଠି ଆସିବାକୁ ପଠାଇଥିଲା ଖବର ।
ମଣିଷଧି ନେଇ ତରତର ହୋଇ ନ ମାନି ପାଣି ପବନ
ଦୂର ବିଦେଶରୁ ଯାଉଅଛି ଘରେ ରଖିବି ତା'ର ଜୀବନ ।
( ନନ୍ଦକିଶୋର – ବାଟୋଇ ଓ ନାଉରିଆ )

ଶିଶୁ ବୈଧ ହେଉ ବା ଅବୈଧ ହେଉ ସେ ଜନକ ଜନନୀଙ୍କ ଆହ୍ଲାଦରି ଧନ, ପରିବାରର ଶ୍ରୀ ଓ ସଂସାରର ରତ୍ନ, ଜୀବନଧାରାର ଏକ ପ୍ରବହମାନ ସ୍ରୋତ । ଅଭାବର ଯନ୍ତ୍ରଣା ଭିତରେ ଦଗ୍ଧୀଭୂତ ହେଉଥିଲେ ବି ମାତାର ମନ ଶିଶୁର ପରିତ୍ୟାଗ କାମନା କରିପାରେନା । ଆତ୍ମରକ୍ଷାପାଇଁ ସେ ଯେତେ ଚେଷ୍ଟା ନ କରେ ତା'ଠାରୁ ଅଧିକ ଯତ୍ନଶୀଳ ହୁଏ ଶିଶୁର ଜୀବନ ରକ୍ଷାରେ । ଏଇ ସ୍ୱାର୍ଥତ୍ୟାଗ ମୂଳରେ ରକ୍ତର ବନ୍ଧନ ହିଁ ଏକମାତ୍ର କାରଣ । ଜୀବନ ରକ୍ଷଣ ହିଁ ଏହାର ଉପଯୋଗିକ ଉପାଦାନ । ତେଣୁ ଜୀବନ ପ୍ରତି

ଆନୁଗତ୍ୟ ଯେଉଁଠି ବେଶୀ ମୃତ୍ୟୁ ପ୍ରତି ମନୋଭାବ ସେଠି ଅତି ଭୟଙ୍କର । କାରଣ ଜୀବନପାଇଁ ମୃତ୍ୟୁ ହିଁ ଅତି କ୍ଷତିପ୍ରଦ । ଜୀବନର ସମ୍ବଳ ହେଉଛି ଶିଶୁ । ତେଣୁ ମୃତ୍ୟୁର ଆଗମନ ଏ କ୍ଷେତ୍ରରେ ଅବାଞ୍ଛିତ ହେବା ସ୍ୱାଭାବିକ ।

ଜୀବନର ପ୍ରଥମ ପୃଷ୍ଠା ଏଣୁ ଶିଶୁଠାରେ ବହୁସ୍ୱପ୍ନ ଓ ଅଭିଳାଷର ଆକର୍ଷଣ ଜଡିତ । ତାହା ସହିତ ଅନ୍ୟମାନଙ୍କ ଯୋଗସୂତ୍ର କେବଳ ବାହ୍ୟିକ ନୁହେଁ, ଆନ୍ତରିକ । ସମ୍ପର୍କରେ ମନ ଓ ହୃଦୟର ଭୂମିକା ଅତି ମୂଲ୍ୟବାନ୍ । ତେଣୁ ଅନ୍ୟମାନଙ୍କ ସହିତ ଶିଶୁର ସମ୍ବନ୍ଧ ମନସ୍ତାତ୍ତ୍ୱିକ ଓ ଆନ୍ତରିକ । ସେହି ମନସ୍ତାତ୍ତ୍ୱିକ ସମ୍ପର୍କର କାବ୍ୟିକ ପରିପ୍ରକାଶ ଯୁଗରୁ ଯୁଗ ପରିବେଶରେ କିପରି ପ୍ରତିଫଳିତ ହୋଇଛି ତା'ର ଏକ ବିସ୍ତୃତ ଆଲୋଚନା ଏଠି କରାଯାଇଛି ଓ କାବ୍ୟ-ସାହିତ୍ୟରେ ଶିଶୁ ପ୍ରଧାନ ଭୂମିକା ଗ୍ରହଣ କରିଛି । ପ୍ରାଚୀନ କାବ୍ୟ କବିତା ଶିଶୁର ମୂର୍ତ୍ତିମନ୍ତ ଚିତ୍ର ଅଙ୍କନରେ ପ୍ରୟାସୀ ହୋଇଛି । ଶିଶୁର ବିବିଧ ରୂପ ବର୍ଣ୍ଣନାରେ, ଶିଶୁ ପ୍ରତି ଜନକଜନନୀଙ୍କ ବାସ୍ତବ ମନୋଭାବ ପ୍ରକଟନରେ ପ୍ରାଚୀନ ଓ ସାମ୍ପ୍ରତିକ କବି ଅବହେଳା ପ୍ରଦର୍ଶନ କରି ନାହାଁନ୍ତି । ନାରୀର ମୂକ ଅଭିଳାଷକୁ କବିମାନେ ଲିପିବଦ୍ଧ କରିବାରେ ନାରୀ, କୁଣ୍ଠାବୋଧ କରି ନାହାଁନ୍ତି । ମାତୃତ୍ୱ ହିଁ ତା'ର ପ୍ରଧାନ ଉପଜୀବ୍ୟ । ତା'ର ସ୍ୱର ଉଚ୍ଚାରିତ ହୋଇଛି କାବ୍ୟରେ । କବି ଦୃଷ୍ଟିରେ ଶିଶୁ ହୋଇଛି ଅମର ସାମଗ୍ରୀ ।

---

ଝଙ୍କାର, ୨୨ଶ ବର୍ଷ—୮ ସଂଖ୍ୟା
ନଭେମ୍ବର ୧୯୭୦

# ନାରୀକବି ଓ ତାଙ୍କ କାବ୍ୟ-ଚେତନା

ମୁଁ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶକ୍ରମରେ ନାରୀ ଲେଖିକାର କାବ୍ୟିକ ଅବଦାନକୁ ବିଶ୍ଳେଷଣ କଲାବେଳେ ଯେପରି ଲକ୍ଷ୍ୟ କରିଛି, ମନେ-ହୁଏ କବି ତା' ଚେତନାର ପରିପୁଷ୍ଟି ପାଇଁ ଯୁଗର ମର୍ମବାଣୀକୁ ଅନ୍ତରେ ଅନ୍ତରେ ଉପଲବ୍ଧି କରିଛି ଏବଂ ଯେଉଁ ଉତ୍ସାହ ଓ ଆବେଗ ମଧ୍ୟରେ ତାହାକୁ ପ୍ରକାଶ କରିବାକୁ ଚେଷ୍ଟା କରିଛି, ଯେଉଁ ମାର୍ମିକ ଅନୁଭବକୁ ରସ-ଗର୍ଭିତ ଓ ପ୍ରାଣସ୍ପନ୍ଦିତ ଭାଷାରେ ରୂପାୟିତ କରିଛି, ତାର କୌଣସି ବ୍ୟତିକ୍ରମ ହୁଏତ ନାରୀ ଲେଖିକାରେ ଦେଖାଯାଇନ । ସେ କଳାକାର, ସମାଜର ସଚେତନ ଶିଳ୍ପୀ । ଭିନ୍ନ କଳେବର ହେଲେ ବି ଯୁଗ-ଚେତନାକୁ ଗ୍ରହଣ କରିବାର ଗ୍ରାହିକା ଶକ୍ତି ଆଦୌ ଭିନ୍ନ ନୁହେଁ । ପଦ୍ମର ରୂପଲାବଣ୍ୟ ଅଳି ମନରେ ଯେଉଁ ପିପାସାର ତୀବ୍ରତା ସୃଷ୍ଟି କରେ, ଉପବନର ବର୍ଣ୍ଣବିଭା ରୂପ-ପାଗଳୀର ଚିତ୍ତବୃତ୍ତିରେ ଯେଉଁ ବିମୁଗ୍ଧ ଭାବବେଶ ସୃଷ୍ଟି କରେ କିମ୍ବା ସହର ଉପାନ୍ତ ପଲ୍ଲୀପୀଠର ଶବ୍ଦ ଶବ୍ଦ ଅପୂର୍ବ ଜୀବନ ।ତାକୁ ଯେପରି ସମ୍ବେଦନଶୀଳ କରେ ଏବଂ ରାସ୍ତା ଛକର ବ୍ୟାଧିଗ୍ରସ୍ତ ଝିଅଟିର କବି ମନରେ ଯେଉଁ ଆବେଦନ ସୃଜେ, ସୀମାନ୍ତର ରଣ ଦୁନ୍ଦୁଭି ଶିଥିଳ ପ୍ରାଣକୁ ଯେଉଁ ପରିମାଣରେ ରଣୋନ୍ମତ୍ତ କରି ତୋଳେ, ଠିକ୍ ସେହିପରି ନାରୀ ମନର ଭାବବୋଧ ସମ-ସ୍ୱରରେ ପ୍ରତିଧ୍ୱନି ତୋଳିଛି । ତେଣୁ ଯେତେ ଭିନ୍ନତା ଥିଲେ ବି ସମାଜ ଜୀବନ ଓ ମାନସିକତାର ବିକାଧାରେ ଆଧୁନିକ ନାରୀ ଲେଖିକା ସୃଜନଶୀଳ ହୋଇଉଠିଛି ।

ଦୁଇଟି ଆଖିର ଅନୁଶୀଳନ ଭିତରେ ହୁଏତ ଗୋଟିଏ ଜୀବନର ମର୍ମକଥା ପ୍ରତିବିମ୍ବିତ, ଗୋଟିଏ ବାକ୍ୟର ସ୍ଫୁରଣରେ ଗୋଟିଏ କାହାଣୀ ଲିପିବଦ୍ଧ —ସେଇ ତ ସାହିତ୍ୟ, ସୃଷ୍ଟି ଓ ସଞ୍ଜୀବନୀ । ଊନବିଂଶ ଶତାବ୍ଦୀ ସଦ୍ୟ ପୂର୍ବ ସଂସ୍କୃତି ସ୍ଥାପତ୍ୟ ର ଏକ ନବୀନ ରୂପାନ୍ତରରୂପେ ଆବିର୍ଭୂତ

ହୋଇଥାଏ ମାତ୍ର କେତୋଟି ନୂତନ ଆତ୍ମିକ ଓ ଆଙ୍ଗିକ ବିବର୍ତ୍ତନକୁ ନେଇ ଏବଂ ଯଦି ସେଥିରେ କାଳୀୟ ସଚେତନତା, ସାଧାରଣ ଜୀବନର ମୂର୍ଚ୍ଛନ, ପ୍ରକୃତିର ନିସର୍ଗ ସୁଷମାର ଉଦ୍‌ଘାଟନ, କଳଙ୍କିତ ସମାଜର ବିଶୋଧନ କିମ୍ବା ନିଭୃତ ମନର ବିଶ୍ଳେଷଣ ଅତୀବ ସ୍ପଷ୍ଟତର ହୋଇଥାଏ, ତେବେ ସେସବୁର ପ୍ରତିଲିପି ନାରୀ ଲେଖନୀରେ ଯେ ପ୍ରାଣବନ୍ତ, ଏହା ନିଃସନ୍ଦେହ ।

ପ୍ରାଚୀନ ପରିବେଶ ଓ ପାରଂପରିକ ଚିନ୍ତା ପରିସରରୁ ଉତ୍ଥିତ ନାରୀକବି ମାଧବୀ ଦାସୀ କିମ୍ବା ବୃନ୍ଦାବତୀ ଦାସୀଙ୍କ କାବ୍ୟ ମନର ଆଲୋଡ଼ନ ଗତ ଶତକର ଅନେକ ଲେଖିକାଙ୍କର ମାନସିକ ଚେତନା ଓ ସଂଯୋଜନାଠାରୁ ଭିନ୍ନ । ଏ ଭିନ୍ନତା ଦୃଷ୍ଟିରେ ବିକଳ୍ପ ଭଙ୍ଗୀରେ ହିଁ ଲୁଚିରହିଥିଲା । ଯେଉଁ କବି ମାତ୍ର ଗୋଟିଏ ଶତକ ପୂର୍ବେ କଳ୍ପନାର ଆବିଷ୍କର୍ତ୍ତା ଭକ୍ତିର, ଧର୍ମ ଓ ଯୌନ ବୁଭୁକ୍ଷାର ପାରଂପରିକ କୃତ୍ରିମତାର ଗୋଲକ ଭିତରେ ଥାଇ ପ୍ରକୃତି-ଜଗତକୁ କାବ୍ୟ-ଜଗତ ସହିତ ଏକୀଭୂତ କରିପାରୁ ନ ଥିଲେ କିମ୍ବା ଦେବଦେବୀ ଓ ଅଭିଜାତ ଜୀବନର ସ୍ତବପାଠରେ ନିଜକୁ ନିମଜ୍ଜିତ କରି ରଖିଥିଲେ, ସେମାନେ ଓ ସେମାନଙ୍କର ସ୍ୱରଲିପି ଊନବିଂଶ ଶତାବ୍ଦୀର ଶେଷ ପାଦବେଳକୁ ସଂପୂର୍ଣ୍ଣରୂପେ ବଦଳି ଯାଇଥିଲା । ଗଭୀର ଆଧ୍ୟାତ୍ମିକତା ଓ ଉଚ୍ଚ ଦାର୍ଶନିକତା, ଶାସ୍ତ୍ରୀୟ ଅଭିବ୍ୟକ୍ତି ନିଜର ମୋହାଚ୍ଛନ୍ନ ଜଗତ ଓ ବିଶ୍ୱାସବୋଧ ପ୍ରତି ରକ୍ଷଣଶୀଳ ମନୋଭଙ୍ଗୀ, ଜୀବନର ସ୍ୱାଭାବିକ ବିକାଶ ଧାରାରେ ଭବିଷ୍ୟତ ଗଠନଲାଗି ସଙ୍କେତ ଦେବାରେ କିମ୍ବା ସମାଜର ଜଟିଳ ସମସ୍ୟାକୁ ସମାହିତ କରିବାଲାଗି ନିର୍ଦ୍ଦେଶ କରିବାରେ, ସାଧାରଣ ଦୁଃଖ, ବିପଦରେ ମ୍ରିୟମାଣ ବ୍ୟକ୍ତିକୁ ଆତ୍ମବିପଦର ସମବୋଧୀ ସାଥୀରୂପେ ଉଦ୍‌ବୋଧନ କରିବାରେ, ବ୍ୟକ୍ତିର ସ୍ୱକୀୟ ଚିନ୍ତା ଚୈତନ୍ୟକୁ ଦୃଢ଼ ସ୍ୱରରେ ଉଚ୍ଚାରି ମଣିଷ ଓ ମଣିଷର ପରିବେଶକୁ ନିୟନ୍ତ୍ରିତ କରିବା ଏବଂ ଶରୀର ଓ ମନ ଭିତରେ ସମନ୍ୱୟ ସ୍ଥାପନ କରିବା, ବୌଦ୍ଧିକ ଅଖଣ୍ଡତା ପ୍ରତିଷ୍ଠା କରିବା ଆଦି ଆଧୁନିକ କବି-ଆତ୍ମାର ମୌଳିକ ପୁଞ୍ଜିରୂପେ ଦେଖାଦେଇଥିଲା; ଯାହାକି ପ୍ରାଚୀନ କବିର କାବ୍ୟସାମଗ୍ରୀରୁ ଖୋଜି ପାଇବା କଷ୍ଟକର । ତେଣୁ ଆଧୁନିକ ନାରୀକବିର କାବ୍ୟଲିପିରେ ଦୁଇଟି ଆତ୍ମାର ସମ୍ମିଳିତ ସ୍ୱର ପ୍ରକଟିତ । ଭାରତୀୟ ଆଦର୍ଶବୋଧ ଓ ୟୁରୋପୀୟ ସଂସ୍କୃତି ଆଧୁନିକ ଓଡ଼ିଆ ସାହିତ୍ୟକୁ ନିୟନ୍ତ୍ରିତ କଲାପରି ନାରୀକବିର ମନୋଭାବକୁ ତଦନୁସାରେ ପରିଚାଳିତ କରିଛି ।

୧୯୦୧ରୁ ଆଜିପର୍ଯ୍ୟନ୍ତ ଯେତେ ଜଣ ନାଟ୍ୟକବିଙ୍କର କଳାସୃଷ୍ଟି ପରିଦୃଷ୍ଟ, ସେମାନଙ୍କର ଅନୁଶୀଳନରେ ଏହା ହିଁ ପ୍ରତିପାଦ୍ୟ ।

ନାଟ୍ୟ ଲେଖକର ଅବଦାନ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ପର୍ଯ୍ୟାପ୍ତ ନ ହେଲେ ବି ଯେଉଁ କେତେ ଜଣ ସାହିତ୍ୟ-ସାଧିକାଙ୍କ ନିଷ୍ଠାପର ସାଧନା ଏ ଜାତିର ଚେତନାକୁ ବିବର୍ତ୍ତିତ କରିଛି ଓ ଦେଶର ସ୍ଲୋଗାନରେ ନିଜକୁ ହଜାଇ ଦେବାକୁ ଚେଷ୍ଟା କରିଛି, ସେମାନଙ୍କୁ ସ୍ମରଣ କଲାବେଳେ କୁନ୍ତଳା-କୁମାରୀଙ୍କ କଥା ପ୍ରଥମେ ହିଁ ମନେପଡେ । ଆଜିର ବସ୍ତର, ଯେ କି ଓଡ଼ିଆ ଅଞ୍ଚଳ ହୋଇ ଆଉ ନାହିଁ, ସେଇ ବସ୍ତର ଭୂଇଁର ଧୂଳିମାଟିରେ ଜନ୍ମ ନେଇଥିବା କୁନ୍ତଳା ଚାହିଁଥିଲା ନବ ଉତ୍କଳର ଗଠନ । ପ୍ରବାସରେ ସ୍ୱଳ୍ପ-ଜୀବନ ବିତାଇ ଅପହୃତ ସ୍ୱାଧୀନତାର ପୁନରୁଦ୍ଧାର ପାଇଁ ଏ ଜାତିର ବଡ଼ଦାଣ୍ଡରେ ସ୍ୱାଧୀନତାର ଦୃପ୍ତ ସିଂହକୁ କୋଣାର୍କ ଅଶ୍ୱଭଳି ଶକ୍ତିମଶାଳୀ କରିବାପାଇଁ ଯେଉଁ 'ସ୍ଫୁଲିଙ୍ଗ' ସୃଷ୍ଟି କରିଥିଲା, ଯୁବଜନୋଚିତ ଆକାଂକ୍ଷାରେ ଅଭିବ୍ୟକ୍ତିର ହୁତାଶନ ସୃଷ୍ଟି କରି ଯେଉଁ ପରିମାଣରେ ଜାତୀୟ ଉନ୍ମାଦନା ପ୍ଲାବିତ କରି ପାରିଥିଲା, ତାହା ହୁଏତ ସେ ସମୟରେ ଭାରତ ପାଇଁ ନିତାନ୍ତ ଆବଶ୍ୟକୀୟ ଭାବ-ଉନ୍ମାଦନାରୂପେ ପରିଗୃହୀତ ହୋଇଥିଲା । ସେ ହୁଏତ ସେଦିନ ଭାବିଥିଲା ସତେ କଣ ଏ ଉତ୍କଳର ସ୍ୱପ୍ନ ସଫଳ ହେବ ? ବହୁ ଦୂରଦୂରାନ୍ତର ବନ୍ଧୁ କୁଟୁମ୍ବ ଏକାଠି ମିଶିବୁ ? ସେଇଥିଲାଗି ନାଟ୍ୟ ଶିଳ୍ପୀ କୁନ୍ତଳା ଉଦ୍ଦାତ୍ତ କଣ୍ଠରେ ଆହ୍ୱାନ ଦେଇଥିଲା ମୁମୂର୍ଷୁ ଧମନୀକୁ ସ୍ପନ୍ଦିତ କରିବାପାଇଁ :

"ଶୁଣ ହେ ମଣିଷ ଭାଇ,
ଝୁରି ମରିବାକୁ ବୁଡ଼ି ମରିବାକୁ
ମଣିଷ ଜନମି ନାହିଁ ।"

ଅବଳାର ଧମନୀରେ ଉଷ୍ଣ ରକ୍ତର ଏଇ ପ୍ଲାବନ ନବ ତରୁଣ ତପସ୍ୱୀ ମନରେ ମହାଶକ୍ତିର ଅଶାନ୍ତ ଦୋଳନ ସୃଷ୍ଟି କରିଥିଲା ଏବଂ ସିଏ କି ଉଚ୍ଚାରି ପାରୁଥିଲା :

"ବ୍ରହ୍ମପୁତ୍ର ବକ୍ଷେ ପବିତ୍ର କଲ୍ଲୋଳେ
ଉଠେ ମହାଗୀତି ବ୍ୟୋମେ ଜଳେ ସ୍ଥଳେ
ମାତୃନାମ ମନ୍ତ୍ରେ ଉଠ ହେ ଏକବେ ।"

ଅମୃତସ୍ୟପୁତ୍ରାଃ ସନ୍ତାନ ତମେ, ମରଣ ତମର କାହିଁ ? କାରଣ ବିଳାସର ଲୀଳା ନିକେତନ ବିଶ୍ୱ ନୁହଁଇ କାହାର । ତେଣୁ ଦୂର ଅତ୍ୟାଗ୍ନରେ ଦଳିବ ଦୁର୍ବଳେ ରକ୍ତର ପିପାସା ଶମିବ । ନତଶିରେ ସୁଖେ ଶ୍ରୀପାଦ ଅରପି ଆପଣାକୁ ଆପେ ବଧିବ । ଏ ନୁହେଁ ବିଧାତା ବିଶ୍ୱର । କାରଣ ଧ୍ୱଂସ ସାକ୍ଷୀ ଓ ମୃତ୍ୟୁର ଧାତ୍ରୀ ନୁହଁଇ ସୁନ୍ଦର ସଂସାର । ଏ ବିଶ୍ୱ ରମଣୀୟ ଏବଂ ଏ ମଣିଷ ବରଣୀୟ । ମାନବାତ୍ମା ମହନୀୟ । ତେଣୁ ଏ ମାନବ ଜୀବନ ମାୟାର ଛଳନା ନୁହେଁ, ନିଷ୍ଠୁର ନିୟତି ଚକ୍ର ପେଷଣର ଯନ୍ତ୍ରଣା ବି ନୁହେଁ । ଜୀବନ ଅନନ୍ତ । ପ୍ରାଣେ ପ୍ରାଣେ ସେ ଅନନ୍ତ ସତ୍ତାର ପ୍ରେରଣା । ତେଣୁ ମୁଁ ମାନବ; ନୁହେଁ ମାତ୍ର ମାଟିର ଖେଳଣା, ଚିରନ୍ତନ ମଣିଷର ଶକ୍ତି । ସେଇ ଶକ୍ତିର ଅପଚୟ ନ ଘଟୁ । ଯଶୋଦା କୁନ୍ତୀର ଯଶୋଗୀତେ ନିନାଦିତ ହେଉ ଆର୍ଯ୍ୟ କ୍ଷିତି । କୌଶଲ୍ୟା, ସୁମିତ୍ରା, ଶଚୀ ଆଦି ମାତା ଯା'ର, ସେମାନେ ଦୁର୍ଗତ ଦେଶର ଅହଙ୍କାରରେ ଭାରତ ଉଦ୍ଧାର ମହାମନ୍ତ୍ରରେ 'ବନ୍ଦେ ମାତରମ୍'ର ଉଚ୍ଛ୍ୱସିତ ଚିତ୍କାର ଭିତରେ ଦୃପ୍ତ ସାହସର ଶକ୍ତି ସଞ୍ଚାର କରିଛନ୍ତି ଏବଂ ନରନାରୀଙ୍କ କୋଟି କୋଟି ଜୀବନ ଭିତରେ ଆତ୍ମପ୍ରତ୍ୟୟର ବୀଜବପନ କରି ବିଦ୍ରୋହର ସ୍ୱର ତୋଳିଛନ୍ତି ଏବଂ କହିଛନ୍ତି :

"ଦୁଃଖ ଯେଦିନ ଘୋଟି ଆସେ ମୋର
ରୁଦ୍ର ତିମିର ବେଶେ
ସେ ଦିନ ଯେସନେ ଭୟେ ନ ମରିବି
ତୀବ୍ର ନିରାଶା କ୍ଲେଶେ ।
ମୃତ୍ୟୁ ଯେ ଦିନ କରାଳ ଲୋଚନେ
ତର୍ଜି ଗର୍ଜିବ ମୋତେ
ନିଜର ମହତ୍ତ୍ୱେ ବଳିବ ତାକୁ
ନ ମରିବି ଅଣାୟତ୍ତେ ।"

ଏହାହିଁ ନାରୀ'ଭାରତର ଆତ୍ମପ୍ରତ୍ୟୟ—ଜାୟା, ଜନନୀ ପ୍ରତି ଉଚ୍ଛ୍ୱସିତ ବାଣୀ ।

ସୁତରାଂ ନାରୀ ଲେଖନୀ ଏ ଜାତିକୁ ପ୍ରତ୍ୟୟ ଦେଇଛି, ବ୍ୟକ୍ତି ମର୍ଯ୍ୟାଦା ବୋଧରେ ସଚେତନ କରି ତୋଳିଛି ପ୍ରତ୍ୟେକଙ୍କୁ । ହୃଦୟର ଗଭୀରତମ ପ୍ରଦେଶରୁ ଶ୍ରଦ୍ଧା ଓ ପ୍ରୀତିର ଅଞ୍ଜଳି ବାଢ଼ିଛି । ସେଇ ପ୍ରାଣପୂର୍ଣ୍ଣ

ନିବେଦନ ଓ କରୁଣା ଭିକ୍ଷା ମଧ୍ୟରେ କବିର ଆତ୍ମା ହୁଏତ ବୁଦ୍ଧ, କନ୍‌ଫୁସିୟସ୍, ଶଙ୍କର, ପରମହଂସ ସମସ୍ତଙ୍କୁ ଏକୀଭୂତ କରି ପାରିଛି । ହୁଏତ କୌଣସି ଆନୁଷ୍ଠାନିକ କିମ୍ବା ଗୋଷ୍ଠୀଗତ ଧର୍ମର ସଂକୀର୍ଣ୍ଣତା ତା ଭିତରେ ପ୍ରକାଶ ପାଇନି । କିନ୍ତୁ ନିଷ୍କପଟ ଆତ୍ମାର ଉଚ୍ଚାରଣ, ଅନାବିଳ ଭକ୍ତିବୋଧର ଦୃଷ୍ଟାନ୍ତ ଥାପି ଯାଇଛି । ହୁଏତ ସତ କଥା, କବିର ଉପଲବ୍‌ଧି ସ୍ୱୀକାର କରୁଛି :

"ହରି ହରି କେହି ଡାକୁଛି ସତତ
ପ୍ରଭୁ ପ୍ରଭୁ କେହି କହେ
ତୁମ ନାମ କେହି, ନ ନେଇ କେହି ବା
ତୁମ ଲାଗି ଦୁଃଖ ସହେ,
କାଷ୍ଠ ପାଷାଣରେ କେ ଦେଖେ ମୂରତି
ମାନବରୂପେ ବା କେ କରଇ ପ୍ରୀତି
ଜନନୀ ଭାବରେ କେ କରଇ ନତି
ପିତୃଭାବ କେହି ବହେ ।
× × × × ×
କୃଷ୍ଣରୂପେ କେହି କରେ ଆରାଧନା
ଖ୍ରୀଷ୍ଟ କହି କେହି କରୁଛି ବନ୍ଦନା
ସବୁ ତ ପ୍ରାର୍ଥନା ସବୁ ତ ସାଧନା
ସବୁ ସତ୍ୟ, ମିଥ୍ୟା ନୁହେଁ ।"

ଏଇ ସତ୍ୟର ଉଦ୍‌ଘାଟନ ଏବଂ ବିଭୁ ବ୍ୟକ୍ତିତ୍ୱର ସନାତନତ୍ୱ ଓ ସାର୍ବଭୌମତ୍ୱ ସମର୍ପଣ ଆର୍ଯ୍ୟସଂସ୍କାର ଓ ବୈଷ୍ଣବଧାରାର ଏକ ପ୍ରତିଲିପି ମାତ୍ର । କିନ୍ତୁ ସେଇ କବିର ଦୃଷ୍ଟି ପ୍ରଚଳିତ ଦର୍ଶନଦ୍ୱାରା ପ୍ରଭାବିତ ହୋଇ ନରଠାରେ ନାରାୟଣଙ୍କର ସନ୍ଧାନ ଉପଲବ୍‌ଧି ଓ ବିଶ୍ୱାସ କରିଛି ଜଗତର କୋଟି କୋଟି ଅନାହାରୀ ବୁଭୁକ୍ଷୁ ଓ ଯନ୍ତ୍ରଣାପିଷ୍ଟ ନିଆଶ୍ରମାନେ ହିଁ ଭଗବାନ୍ । ନାରୀକବି କୁନ୍ତଳା ଏହି ଉପଲବ୍‌ଧିର ଚରମ ପ୍ରାନ୍ତରେ ନିଜକୁ ଉପନୀତ କରି ଯେଉଁ ଦର୍ଶନର ଜିଜ୍ଞାସା ସୃଷ୍ଟି କରିଛନ୍ତି, ତାହା ଗାନ୍ଧୀବାଦୀ ହେଉ ବା ଅନ୍ୟ କୌଣସି ଦାର୍ଶନିକ ମତବାଦ ହେଉ, ତାହା ସ୍ୱତନ୍ତ୍ରରୂପେ କବିର ଏକ ଆତ୍ମିକ ଉପଲବ୍‌ଧି, ଏଥିରେ ସନ୍ଦେହ ନାହିଁ । କାରଣ ସେହି କବି ସିଦ୍ଧାନ୍ତ କରିଛନ୍ତି— କୁଚ୍ଛ୍ର ସାଧନାଦ୍ୱାରା ନୁହେଁ, ତପଶ୍ଚାରଣଦ୍ୱାରା ନୁହେଁ, ପ୍ରେମରେ ବ୍ରହ୍ମଲାଭ ସମ୍ଭବ । ଏହି ପ୍ରାଣ ଏକ ଉନ୍ମୁକ୍ତ ଦେବଭୂମି; ଯାହାର ପରିସର ଭିତରେ

ଗୌତମ ଓ ଗୌରାଙ୍ଗଙ୍କ ମିଳନ, ହୃଦୟ ବେଦୀରେ ଖ୍ରୀଷ୍ଟ ଓ କୃଷ୍ଣଙ୍କର ଉପାସନା । ଧର୍ମ କେବଳ ହୃଦୟର ସମ୍ପତ୍ତି ନୁହେଁ, ପରମାତ୍ମା କେବଳ ଆତ୍ମାରେ ଅଧିଷ୍ଠିତ ନୁହଁନ୍ତି, ସେ ସମାଜର ଜନନୀ, ଏକ ପିତା ପ୍ରଭୁ, ଏକ ଧର୍ମ, ଏକ ସମାଜ, ମାନବର ହିତାର୍ଥେ ଆତ୍ମବଳୀ ଦାନ ହିଁ ପୁଣ୍ୟ ସଞ୍ଚୟ । ଅନ୍ୟର ମୁକ୍ତି ଅନ୍ୱେଷଣରେ ଆତ୍ମମୁକ୍ତି ହିଁ ସମ୍ଭବ । ଏଇ ଉଚ୍ଚାଙ୍ଗ ଉପଲବ୍ଧିରୁ ମନେହୁଏ, କୁନ୍ତଳା କେବଳ କବି ନୁହନ୍ତି, ସେ ସନ୍ନ୍ୟାସିନୀ, ତପସ୍ୱିନୀ; ଦାର୍ଶନିକା ଓ ରହସ୍ୟବାଦିନୀ । ତାଙ୍କ ଦୃଷ୍ଟିଭଙ୍ଗୀ ଓ ମାନବପ୍ରେମ ସଂପୂର୍ଣ୍ଣ ସ୍ୱତନ୍ତ୍ର । ତେଣୁ ଏଇ ସ୍ୱତନ୍ତ୍ରତାର ପରିପ୍ରକାଶ ନିମ୍ନୋକ୍ତ ପଦ୍ୟରେ ଅନୁଭୂତ, ଯେଉଁଠିକି ସେ ଦରିଦ୍ରନାରାୟଣଙ୍କଠାରେ ଭଗବାନଙ୍କ ସତ୍ତା ଉପଲବ୍ଧି କରି ଏକ ପ୍ରକୃତ ଭକ୍ତ ଓ ସାଧିକାର ଭୂମିକା ଗ୍ରହଣ କରିଛନ୍ତି । କବି ଆବେଗ ଅଧୀର କଣ୍ଠରେ ଦରିଦ୍ରନାରାୟଣ ମୁଖରେ ଭାଷା ଦେଇ ଘୋଷଣା କରିଛନ୍ତି :

"ଧନ ସଦନେ ମୁଁ ଜଠରଜ୍ୱାଳା
ବିଧବା ଲୋଚନେ ଲୋତକମାଳା,
ଅନାଥବେଶେ ମୁଁ ଶୁଏ ତରୁତଳେ ହିମତଳେ କିପରି ବସିଛୁ ?

× × × × ×

ସଜାଉଛ କିମ୍ପା ଏ ସଜ କୁସୁମ
ଶିଳାରେ ଘଷୁଛ ସୁବାସ ଚନ୍ଦନ
ସୁନା ଦୀପ ଜାଳି ଥୋଇ ଅର୍ଘ୍ୟଥାଳୀ
କାହା ନିକଟେ ଦେବେ ବନ୍ଦୁଛୁ ?
ପଦାରେ ବୁଲେ ମୁଁ ପିନ୍ଧି ଛିଣ୍ଡା କନ୍ଥା,
ଭୁଲିଲ କି ଜୀବନ ବୁଝିଁଛୁ ?"

ଏଇ ଉପଲବ୍ଧି ଓ ବିଶ୍ୱର ନିଃସ୍ୱ ନରନାରୀଙ୍କଠାରେ ନାରାୟଣଙ୍କର ଅର୍ପଣ କୁନ୍ତଳାଙ୍କଠାରେ ପ୍ରକାଶ ପାଇଁ ଓଡ଼ିଆ ସାହିତ୍ୟର ବିଭିନ୍ନ କବିଙ୍କ ଲେଖାକୁ ସଂଯମିତ କରିଛନ୍ତି । ଏପରିକି ସବୁଜ-କବି ବୈକୁଣ୍ଠନାଥଙ୍କ 'ମୁକ୍ତ ଭଗବାନ୍' କବିତା କୁନ୍ତଳାଙ୍କ ଏଇ ଭାବବୋଧର ଏକ ପ୍ରତିଧ୍ୱନି ମାତ୍ର । କୁନ୍ତଳାଙ୍କର ସାହିତ୍ୟିକ ପ୍ରତିଭା ଓ ବୈଭବଶାଳୀ କୃତିତ୍ୱ ଓଡ଼ିଆ ସାହିତ୍ୟରେ ଅନନ୍ୟସାଧାରଣ ।

କବିଙ୍କ କାବ୍ୟ ପ୍ରତିଭା ଯେଉଁ ପରିମାଣରେ ସୁମର୍ଯ୍ୟାଦା ଓ ସୃଜନଶୀଳତାରେ ଋଦ୍ଧିମନ୍ତ, ଠିକ୍ ସେହିପରି କୁନ୍ତଳାଙ୍କ କଥା-ସାହିତ୍ୟ-ଶିଳ୍ପନୈପୁଣ୍ୟ ଓଡ଼ିଆ ସାହିତ୍ୟର ନାରୀ ଲେଖିକାରେ ଏକ ଅମର ସ୍ୱାକ୍ଷର । କୁନ୍ତଳାଙ୍କର 'ପରଶମଣି' 'କାଳିବୋହୂ' 'ରଘୁ ଅରକ୍ଷିତ' 'ନଅତୁଣ୍ଡି' ଆଦି ବହୁବିଧ ଉପନ୍ୟାସ ଫକୀରମୋହନଙ୍କ ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଅମୂଲ୍ୟ ଅବଦାନ । ଫକୀରମୋହନଙ୍କ ଚିନ୍ତନ ଓ ସମାଜ ଚେତନା ଯଦିଓ ତତ୍କାଳୀନ ସମୟର ପ୍ରଭାବଶୀଳତାରେ ଭଗ୍ନକାୟ ପଲ୍ଲୀ ପରିବେଶକୁ ରୂପାୟିତ କରିଥିଲା ଏବଂ ତା'ର ମାଧ୍ୟମରେ ଯଦିଓ ଅଗଣିତ ପଲ୍ଲୀ ନରନାରୀ ସମାଜର ଉଚ୍ଚ ନୀଚ ଶ୍ରେଣୀ ବିଭେଦ ଭିତରେ ନିଃସହାୟ ହୋଇ ଆର୍ତ୍ତ ଅନୁଭବର ସ୍ୱରଲିପି ଯେପରି ସଞ୍ଚାର କରୁଥିଲେ, ତାର କାହାଣୀ ହୁଏତ ଲିପିବଦ୍ଧ ହୋଇଥିଲା ଫକୀରମୋହନଙ୍କ କଥା-ସାହିତ୍ୟରେ । ଚରିତ୍ର ମୁଖ୍ୟ ଅଂଶ ଅଧିକାର-କରିଥିଲା । ଜୀବନର ଚିତ୍ରକର ଫକୀରମୋହନ ଯେଉଁ ଜୀବନକୁ ତାଙ୍କ ଭାବବୋଧର ସାମଗ୍ରୀ ଓ ଅନୁଭବର ଅବଲମ୍ବନରୂପେ ଗ୍ରହଣ କରିଥିଲେ, ସେମାନେ ହୁଏତ ଶୋଷକ କିମ୍ବା ଶୋଷିତ, ସାମନ୍ତ କିମ୍ବା ସର୍ବହରା । କିନ୍ତୁ କୁନ୍ତଳାକୁମାରୀ ପରବର୍ତ୍ତୀ ଯୁଗରେ ଓଡ଼ିଆ ସାମାଜିକ ଜୀବନର ମଧ୍ୟବିତ୍ତ ଶ୍ରେଣୀରେ ଦେଖା ଦେଇଥିବା ବିଭ୍ରାଟ, ସାମାଜିକ ପୀଡ଼ନ ଓ ଅତ୍ୟାଚାର, ରକ୍ଷଣଶୀଳ ସମାଜର ମତାନ୍ଧତା, ଦୈନନ୍ଦିନ ପାରିବାରିକ ଜୀବନର ମାନହୀନତା ଓ ଅସ୍ୱସ୍ତି ଆଦି ବିଧି ଅବିଧିର ସୁସ୍ପଷ୍ଟ ସୃଜନ ଶିଳ୍ପୀରୂପେ କଥା ସାହିତ୍ୟକୁ ସମୃଦ୍ଧ କରିଥିଲେ । କୁନ୍ତଳାକୁମାରୀଙ୍କ ଚରିତ୍ରଚିତ୍ରଣରେ ନାରୀ ଜାତିପ୍ରତି ସହାନୁଭୂତିଶୀଳତା ବିଶେଷ ପ୍ରକାଶ ପାଇଥିଲା । ନାରୀ ଜୀବନର ଅସହାୟତା ଓ ବିବାହ ପ୍ରଥାରେ ଦେଖାଦେଇଥିବା ବେପାରୀ ବୃତ୍ତି ନାରୀପ୍ରତି ପୁରୁଷର ସ୍ୱେଚ୍ଛାଚାରିତା ଓ ନିର୍ମମ ଅତ୍ୟାଚାର ଆଦିର କରୁଣ ଚିତ୍ର ତାଙ୍କ ଉପନ୍ୟାସରେ ମୁଖ୍ୟ ସ୍ଥାନ ଅଧିକାର କରିଥିଲା । ପୁରୁଷ ଚରିତ୍ରଚିତ୍ରଣ ଅପେକ୍ଷା ନାରୀ ଚରିତ୍ରଚିତ୍ରଣରେ ଅପେକ୍ଷାକୃତ ସିଦ୍ଧି ଲାଭ କରିଥିଲେ କୁନ୍ତଳା । ତେଣୁ କୁନ୍ତଳାକୁମାରୀ ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ଭିତରେ କବିର ଭାବବୋଧ ଓ କଥାଶିଳ୍ପୀର କୁଶଳ ଜୀବନ ଚିତ୍ରଣଦ୍ୱାରା ଓଡ଼ିଆ ସାହିତ୍ୟକୁ ଏକାଧାରରେ ପ୍ରଥମ ନାରୀ ଔପନ୍ୟାସିକା ଓ ବିଂଶ ଶତାବ୍ଦୀର ପ୍ରତିଭାବନ୍ତ ସ୍ମରଣୀୟା ନାରୀକବିରୂପେ ଯେପରି ବିମଣ୍ଡିତ କରିପାରିଥିଲେ, ତାହା ହୁଏତ

ସେହି ସମସ୍ତ ସୀମାର ଅନ୍ୟ କୌଣସି ନାରୀକବିଙ୍କ ଦ୍ୱାରା ସମ୍ଭବ ହୋଇପାରି ନ ଥିଲା ।

ଯଦିଓ କୁନ୍ତଳାଙ୍କ ପୂର୍ବବର୍ତ୍ତୀ ନାରୀକବିରୂପେ ଅନ୍ନପୂର୍ଣ୍ଣା ଦେବୀ ଓଡ଼ିଆ କାବ୍ୟ-ସାହିତ୍ୟକୁ ବିଭିନ୍ନ ଭାବସମ୍ଭାରରେ ସମୃଦ୍ଧ କରିପାରିଥିଲେ, ତାହା ଯଥାର୍ଥ ଆଲୋଚନା ଅଭାବରୁ ଲୋକଲୋଚନକୁ ଆସିପାରି ନ ଥିଲା । ନାରୀକବି ଅନ୍ନପୂର୍ଣ୍ଣା ପାରିବାରିକ ନିର୍ଯ୍ୟାତନାର ମରଣ ବେଦୀରେ କ୍ଷତ-ବିକ୍ଷତ, ଭଗ୍ନମନସ୍କ ହୋଇ ସୁଦ୍ଧା ୧୯୦୪ ମସିହାରୁ ତାଙ୍କର କାବ୍ୟକବିତାର ମୌଳିକ ସମ୍ଭାବନାଦ୍ୱାରା ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ । ତାଙ୍କର ପଦ୍ୟମାଳା ପ୍ରଥମ, ଦ୍ୱିତୀୟ, ପକ୍ଷୀହରି ଓ ଭକ୍ତ ପ୍ରାର୍ଥନା ୧୯୦୭ ସାଲରୁ ବର୍ଷକ୍ରମେ ପ୍ରକାଶ ପାଇ ପାରିଥିଲା । ୧୯୦୦ ମସିହା, ଯେଉଁ ବର୍ଷ କି ଅନ୍ନପୂର୍ଣ୍ଣାଙ୍କୁ ଶାଶୁଘରେ ଏକ ନୂତନ ଜୀବନ ଆରମ୍ଭ କରିବାର ସୁଯୋଗ ଦେଇଥିଲା, ସେହି ବର୍ଷଠାରୁ ମୃତ୍ୟୁ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ ନାରୀକବି କାବ୍ୟ-କବିତା ରଚନାରେ ନିଜକୁ ନିମଜ୍ଜିତ କରି ରଖିଥିଲେ । ତତ୍କାଳୀନ ଉତ୍କଳ ସାହିତ୍ୟ, ଉତ୍କଳ ହିତୈଷିଣୀ, ପ୍ରଜାବନ୍ଧୁ, ଉତ୍କଳବାସୀ ଆଦି ବିଭିନ୍ନ ପତ୍ର-ପତ୍ରିକା ନାରୀକବିଙ୍କ ପ୍ରତିଭାର ସ୍ୱୀକୃତିରେ ଶତଜିହ୍ୱ ହୋଇ ଉଠିଥିଲା । ନାରୀକବିଙ୍କ ପ୍ରେମପ୍ରବଣ ଚିତ୍ତର ଭକ୍ତିଭାବନା ନିଭୃତ ମନର ସୂକ୍ଷ୍ମ ପ୍ରବୃତ୍ତି ନିବନ୍ଧନ ଓ ନାରୀକଣ୍ଠସ୍ଫୁରିତ କୋମଳ ସ୍ୱରର ଅନୁରଣନ କବିତାଗୁଡ଼ିକର ରସମାଧୁର୍ଯ୍ୟ ବୃଦ୍ଧିରେ ସହାୟକ ହୋଇ ପାରିଥିଲା । ସେଗୁଡ଼ିକର ସଂଗ୍ରହ ହୋଇପାରିଲେ, ତାହା ଏକ ବିରାଟ ଗ୍ରନ୍ଥରେ ପରିଣତ ହୋଇପାରନ୍ତା । ଅନ୍ନପୂର୍ଣ୍ଣା ଓଡ଼ିଆ ସାହିତ୍ୟର ପ୍ରଥମ ସୁଯୋଗ୍ୟା ସମ୍ପାଦିକାରୂପେ 'ସହକାର'ର ସମ୍ପାଦନ ଭାର ଗ୍ରହଣ କରିଥିଲେ । ସମ୍ପାଦିକା ଥିବା ଅବସ୍ଥାରେ ତାଙ୍କୁ ସ୍ୱଏତ ଅନେକଙ୍କ ଠାରୁ ନିର୍ମମ ନିନ୍ଦା ଓ ଅଶ୍ରାବ୍ୟ କୁତ୍ସା ଶୁଣିବାକୁ ପଡ଼ିଥିଲା । କିନ୍ତୁ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଓ ଧୃତି ସେ ସବୁକୁ ଦୂରେଇ ଦେଇ ଦେଶସେବୀ ଲକ୍ଷ୍ମୀନାରାୟଣ ସାହୁଙ୍କ ପ୍ରେରଣାରେ ବହୁକାଳ ଧରି 'ସହକାର' ସଂପାଦନାରେ ମାନିଧାନ କରିପାରିଥିଲା ।

ଏଇ ସମୟର ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟ ବହୁ ନାରୀକବିଙ୍କ ଆବିର୍ଭାବ ଅନୁଭବ କରିଥିଲେ ହେଁ ପ୍ରତ୍ୟେକେ ସତେ ଯେପରି ସାହିତ୍ୟର ବିଭିନ୍ନ ଦିଗକୁ ସ୍ପର୍ଶ କରିବାକୁ ଚେଷ୍ଟା କରିଥିଲେ । ସୌନ୍ଦର୍ଯ୍ୟର ଅବବୋଧରେ ନାରୀ ଚକ୍ଷୁର

ସୂକ୍ଷ୍ମ ଶକ୍ତି ପୁରୁଷ ଦୃଷ୍ଟିଠାରୁ ଭିନ୍ନ । ନାରୀର କାବ୍ୟକଳା-କୌଶଳ ପୁରୁଷର କାବ୍ୟ-ନିପୁଣତାଠାରୁ ଅଧିକ କମନୀୟ ଓ ଲଳିତ । ଏହି ଉପଲବ୍ଧି ଂସେ ସମୟର ବିଭିନ୍ନ ଲେଖିକାମାନଙ୍କ ମଧ୍ୟରୁ ଶ୍ରୀମତୀ ଦେବହୂତି ଦେଈ, ଅପର୍ଣ୍ଣା ଦେବୀ, ଲବଙ୍ଗଲତା ବିଦୁଷୀ ଓ ଶ୍ରୀମତୀ ବନଲତା ଦେଈ ଆଦିଙ୍କ ରଚନାରେ ପ୍ରମାଣିତ ହୋଇଥିଲା । ଦେବହୂତିଙ୍କ 'ମାଳା' କେତୋଟି ଗୀତି କବିତାର ସମାହାର । ତନ୍ମଧ୍ୟରୁ 'ଅନ୍ଧ ବାଳକର ବିଳାପ', 'ଶାଶୁଟିଏ'—ଏହି କବିତାଗୁଡ଼ିକ 'ଗାଥା କବିତା'ର ପର୍ଯ୍ୟାୟଭୁକ୍ତ । ମାତ୍ର 'କ୍ଷମା', 'ତାଜମହଲ', 'ଅଶ୍ରୁତର ସ୍ୱପ୍ନ' ଆଦି କବିତା ସଂପୂର୍ଣ୍ଣ ଭାବନିଷ୍ଠ ଓ ମର୍ମସ୍ପର୍ଶୀ; କିନ୍ତୁ ଅନେକାଂଶରେ ରାଧାନାଥୀ ଆଦର୍ଶବୋଧରେ ଅବଗାହିତ । ଲବଙ୍ଗଲତାଙ୍କର 'ନିଷଧରାଜ' କାବ୍ୟ କାଳିଦାସଙ୍କ 'ନଳୋଦୟ' କାବ୍ୟର ଛାୟାବଲମ୍ବନରେ ଲିଖିତ ହେଲେ ବି ସେଥିରେ ମୌଳିକତା ପରିଲକ୍ଷିତ । କବି-ମନର ଭାବନିଷ୍ଠତା ଓ ଚରିତ୍ର-ଚିତ୍ରଣରେ ଏକାତ୍ମୀୟତା ତାଙ୍କ କାବ୍ୟ ଗୁଡ଼ିକୁ ମହିମାନ୍ୱିତ କରେ । ତଥାପି 'ନିଷଧରାଜ'ର ଭାଷା ସଂସ୍କୃତମୂଳକ ଓ ରାଧାନାଥ ପ୍ରଭାବରେ ଓତଃପ୍ରୋତ ହୋଇଥିବାରୁ କବିଙ୍କ ସ୍ୱକୀୟତା ଠିକଣାରେ ଅନେକଙ୍କୁ କୁଣ୍ଠିତ କରେ । କିନ୍ତୁ ନାରୀକବି ଅପର୍ଣ୍ଣା କାବ୍ୟ ରଚନାରେ ଭଞ୍ଜ ଓ ରାଧାନାଥଙ୍କର ଏକ ସମନ୍ୱୟ । 'ଚିନ୍ତା' ତାର ଦୃଷ୍ଟାନ୍ତ । ଭାରତୀୟ ପୁରାଣର ଏକ ଆଖ୍ୟାୟିକାର ଅବଲମ୍ବନରେ ମହାରାଜ ଶ୍ରୀବତ୍ସ ଓ ତାଙ୍କ ଧର୍ମପତ୍ନୀ ଚିନ୍ତାଙ୍କର ଜୀବନ କାହାଣୀ ଏ କାବ୍ୟର କଥାବସ୍ତୁ ହେଲେ ବି ନାରୀ ମନର ସ୍ୱାଭାବିକ ହୃଦୟବତ୍ତା, ପାତିବ୍ରତ୍ୟ ପ୍ରତିଷ୍ଠାର ଚରମ ଦୃଷ୍ଟାନ୍ତ ଓ ଆଦର୍ଶ ଦୀପ୍ତ ଚରିତ୍ର-ଚିତ୍ରଣର ବୈଶିଷ୍ଟ୍ୟ ଏଥିରେ ନିହିତ । ଏହାକୁ ପାରିବାରିକ ଜୀବନର ନୈତିକତା ନାର୍ଥରୂପେ ଉପଯୁକ୍ତ ମୂଲ୍ୟ ଦେଇଛନ୍ତି । କରୁଣ ରସର ଚମତ୍କାର ବର୍ଣ୍ଣନା ଭିତରେ ବି ପରିଶେଷରେ ମିଳନ ମାଧୁର୍ଯ୍ୟ ପାଠକର ହୃଦୟରେ ସ୍ମୃତିରେଖା ଟାଣିଛି । କବିଙ୍କର 'ବନମାଳତୀ', 'ଆର୍ଯ୍ୟ ଲଳନା' ଓ 'ଶତଦଳ' ଆଦି କାବ୍ୟ-କବିତା ଭିନ୍ନ ଭିନ୍ନ ରୁଚିର ଓ ଦୃଷ୍ଟିର । 'ଆର୍ଯ୍ୟଲଳନା'ର ଛନ୍ଦେ ଛନ୍ଦେ ଦେଶାତ୍ମ-ବୋଧର ଉଦ୍ଦୀପନ ଓ 'ବନମାଳତୀ'ର ପଦେ ପଦେ କାବ୍ୟ-ଛନ୍ଦର ଅନୁରଣନ । କିନ୍ତୁ 'ଶତଦଳ' ଭକ୍ତି ରସାମୃତ ସିନ୍ଧୁ ଲହରୀର ଉଦ୍‌ଘୋଷଣାରେ ଆଲୋଡ଼ିତ ।

ପରବର୍ତ୍ତୀ ଯୁଗର ସୃଜନଶୀଳ କାବ୍ୟ ପ୍ରତିଭା ବିଦ୍ୟୁତ୍‌ପ୍ରଭାଙ୍କର ଲେଖନୀରେ ଏକ ଅଭିନବ ରୂପ ଧାରଣ କରେ । ଗତାନୁଗତିକତାର ଶିବସଙ୍କାର

କରି ସେ ଯେଉଁ ନୂତନ ଭାବାବେଗର କୁଆଁ କୁଆଁ ରବରେ ଓଡ଼ିଆ ସାହିତ୍ୟର ଏକୁଡ଼ିଶାଳକୁ ମୁଖରିତ କରନ୍ତି, ସେଇ ସ୍ୱରର ଉଚ୍ଚାରଣରେ ସାହିତ୍ୟକ୍ଷେତ୍ରରେ ଏକ ନୂତନ ସମ୍ଭାବନାର ଦ୍ୱାର ଉନ୍ମୁକ୍ତ ହୁଏ । ବିଦ୍ୟୁତ୍‌ପ୍ରଭାଙ୍କ ଦୃଷ୍ଟିଭଙ୍ଗୀ-ଦ୍ୱାରା ଆଧୁନିକ ଯୁଗର ନାରୀ ଲେଖିମା ନିଜର ସୃଷ୍ଟି ସ୍ଥାପତ୍ୟର ଏକ ଗୌରବମୟ ଭୂମିକା ଦାବୀ କରେ । କବି ନନ୍ଦକିଶୋରଙ୍କ ପଲ୍ଲୀପ୍ରାଣତାର ପୁନର୍ଜନ୍ମ ହୁଏତ ବିଦ୍ୟୁତ୍‌ପ୍ରଭାଙ୍କ ଦ୍ୱାରା ସମ୍ଭବ ହୁଏ । ପାରିପାର୍ଶ୍ୱିକ ଜଗତର ଯନ୍ତ୍ରଣାପୀଡ଼ିତ କ୍ଳାନ୍ତିବୋଧ ଭିତରେ ସତ୍ୟ ସନ୍ଧାନ ଓ ସୁନ୍ଦରର ପ୍ରମୂର୍ତ୍ତିନ ବିଦ୍ୟୁତ୍‌ପ୍ରଭାଙ୍କ ଦ୍ୱାରା ଯେପରି ସମ୍ଭବ ହୋଇଛି, ଭବିଷ୍ୟତରେ ବର୍ତ୍ତିତ ହେବାକୁ ହୁଏ । ଆର୍ଯ୍ୟ ଚିନ୍ତନରେ ସ୍ୱତନ୍ତ୍ରତା, କାଳଧର୍ମର ଉପସ୍ଥାପନା, ଧରିତ୍ରୀ ପ୍ରକୃତି ଓ ମଣିଷର ଗୀତିଗାନ ତାଙ୍କ କବିତାର ପ୍ରମୁଖ ଚେତନା । କବି ବିଳାସର ରୂପଜୀବୀ ନୁହେଁ, ଆମୋଦ ପ୍ରଲୁବ୍ଧ ନୁହେଁ; ବରଂ ଦୁଃଖ ଅଭାବ, ଅଶ୍ରୁ ଓ ଅନୁତାପର ବିକ୍ଷୋଭ ଭିତରେ ତା' ମନ ଉଦ୍‌ବେଳିତ । ସେ କେବଳ ସ୍ୱପ୍ନ ବା ବିଳାସର ସ୍ତାବକତା କରିପାରି ନାହିଁ । ଦୁଃଖରେ ମମତା ବ୍ୟଥାରେ ଗୌରବକୁ ତା ଜୀବନର ସାଥୀରୂପେ ବରଣ କରିଛି । 'କଙ୍କଣୀ ବୋଝୁ'ଠାରୁ ଆରମ୍ଭ କରି 'ଇକ୍‌ସାବାଲ୍' ଓ 'କଲିକତା କୁଲି' ପର୍ଯ୍ୟନ୍ତ ସମସ୍ତେ ତା ଦୃଷ୍ଟିର ସୀମାରେଖା ଭିତରେ ଜୀଇଁ ରହିଛନ୍ତି । 'ମଶାଣି ପଦାର ସବୁଜ ଘାସ' ତା ଅନ୍ତରକୁ ସିକ୍ତ କରିଛି । ମା'ର ସ୍ମୃତି ଶିକରରେ କବି ଅନୁଭବ କରିଛି, ଏ ତ ମଶାଣି ପଦାର ସବୁଜ ଘାସ ନୁହେଁ, ଏ ତା ସାଆନ୍ତ ମା'ର ସଜଳପଣ; ଯିଏ ତାକୁ ଶୈଶବ ଶେଯୁ ପାଶେ ପାଶେ ଥାଇ ତା'ର ଅଙ୍ଗ ପୁଷ୍ଟ କରିଛି । ଗଭୀର ଆଶିଷର ପଦଧ୍ୱନି ତାକୁ ଅଭୟ ଦେଇଛି । ସେ ତାର ମା' । କବି ଅନୁଭବ କରିଛି :

> "ଶରବିନ ପାଇଁ ଛୁଣ୍ଡାଇ ଦେଇ ମମତା ଧାର
> ମା' ମୋ ହୋଇଛି ମଶାଣି ପଦାର ସବୁଜ ଘାସ ।"

ଏଇ ଅନ୍ତର୍ଦୃଷ୍ଟି ଓ ଆତ୍ମିକ ଅନୁଭବ କବିଙ୍କ କବିତାର ଅନ୍ତଃସ୍ଥଳରେ ଅନୁରଣିତ । କବି ବୁଝେ ତା ମାଟିକୁ, ତା ପଲ୍ଲୀକୁ ଓ ତାର ମାଟିର ମଣିଷକୁ । 'ପଲ୍ଲୀମାଟିର ମୃଦୁ ନିଶ୍ୱାସ, ପବନକୁ ସିନା ଲାଗେ ଉଶ୍ୱାସ, ଉଶ୍ୱାସ କରେ ଛାତି ।" ଏଇ କଥା କବି ବୁଝେ । ବୁଝେ ତା ଜୀବନର ଅନ୍ନଦାତା କୃଷକଙ୍କୁ ।

ସେ ସମ୍ବେଦନା ହୁଏ । ବିଶ୍ୱାସ କରେ :

"ନୁହେଁ ସେ ସ୍ୱପ୍ନବିଳାସୀ ଭାବୁକ
ମାଟିର ଜୀବ ସେ ଦୀନ, ମୂଢ଼, ମୂକ
ଅଛି ତା ଜୀବନ ପୋଷେ"।

ବାସ୍ତବିକ କବିପ୍ରାଣ କେତେ ଆତୁର ସୁନ୍ଦର ଏ ଧର୍ମ ପାଇଁ ! ଯେଉଁ ଧାତ୍ରୀର ଫଗୁଣ ବହ୍ନାନ, ଶରତ ଓ ନାଲି କଇଁ, ମେଘାପ୍ଲୁତ ଗର୍ଜିତ ଶ୍ରାବଣୀ, ନର୍ତ୍ତୋନ୍ତି, ବର୍ଷାର ମୃଦୁରାଗ ଓ ଗ୍ରୀଷ୍ମର ଜ୍ୱଳନ କିମ୍ବା ବୈଶାଖର ଦୁମନ୍ତ ସନ୍ଧ୍ୟା ଏବଂ ଉଷାର ଉଷସୀ ସବୁକିଛି ତା ପ୍ରାଣର ବଲ୍ଲକୀ । ସେଇମାନଙ୍କ ଭିତରେ କବିର ଜନ୍ମ ଓ ବିବର୍ଦ୍ଧନ । ତେଣୁ ସେମାନଙ୍କ ଭିନ୍ନ କାହିଁ ତା ଜୀବନ ? ସେଥିପାଇଁ କବି ଗ୍ରାମ, ସମାଜ ଓ ଦେଶର ଗ୍ଲାନି ବା ମ୍ଲାନିମାନଙ୍କୁ ନେଇ ତା' କଳ୍ପନାକୁ ରୂପାୟିତ କରିଛି । ଗ୍ରାମର ଉଚ୍ଛିଷ୍ଟ ଭୋଗୀ ଦୁଷ୍ଟ ଜୀବନ କିପରି ସଢ଼ୁଛି ହାଡ଼ଭଙ୍ଗା ଖଟଣୀ ଭିତରେ, କଲିକତାରେ କୁଲି କିପରି ମରୁଛି; ପଲ୍ଲୀ ଜୀବନ ନଗର ଜୀବନର ଯନ୍ତ୍ର ଧୂଆଁରେ କିପରି ଶ୍ୱାସ ଦେଉଛି କିମ୍ବା ନିଷ୍କଳଙ୍କା ତରୁଣୀ, ସମାଜ ଚକ୍ଷୁରେ କିପରି ଅବିଶ୍ୱାସୀ ଓ ଅଭିଶପ୍ତା ହୋଇ ଠିଆ ହୋଇଛି, ତା'ର ନଗ୍ନଚିତ୍ର କବି ଆଙ୍କିଛି ତା' କବିତାରେ । କବି ଦେଇଛି, ପଲ୍ଲୀକୁ ନବଜନ୍ମ । ଆଣିଛି ତା' କବିତାରେ ଜୀବନର ନବୀନ ରୂପାୟନ । ସୁତରାଂ ଆଧୁନିକ ନାରୀ ଲେଖନୀରେ କ୍ରମିକ ବିକାଶ ପ୍ରସ୍ତରେ ବିଦ୍ୟୁତ୍‌ପ୍ରଭା ତାଙ୍କ ପରବର୍ତ୍ତୀ କଳାକାରମାନଙ୍କୁ କେତୋଟି ନୂତନ ସମ୍ଭାବନାର ସୂତ୍ର ଗୁଡ଼ାଇଛନ୍ତି ।

ନିର୍ମଳା ଦେବୀଙ୍କ କାବ୍ୟ ଚେତନାରେ ଅସ୍ତ୍ରାଂକୃତ ପ୍ରେମ ବିଗ୍ରହର ପ୍ରମୂର୍ତ୍ତ ଉପାସନା ସ୍ପଷ୍ଟ ପ୍ରକାଶ ଲଭିଛି । ପାର୍ଥିବ ପ୍ରେମର ରସ- ବାରୁଣୀରେ ଅଭିଷିକ୍ତ ନ ହୋଇ ଅପାର୍ଥିବ ପ୍ରେମିକର ଅସଙ୍ଗ ଲିପ୍ସାରେ ଉଦ୍‌ବେଳିତ ନିର୍ମଳାଙ୍କ କାବ୍ୟାତ୍ମା ଯେ ବର୍ଣ୍ଣ ଗନ୍ଧ ଓ ସ୍ପର୍ଶବିହୀନ ସେ ଅରୂପ ରତନର ରସଧାରରେ ବିଭୋର ହୋଇଛି କବି । ନିଜ ଚିନ୍ତା ଓ ଅନୁଭୂତିର ଲୁଚାଚଳୁ ଭିତରେ ସେ ଅନୁଭବ କରିଛି :

"ତୁମେ ଶବ୍ଦବିହୀନ ସବୁ,
ଏ କି ପରିପୂର୍ଣ୍ଣତା ଦେଖେ,
ଦେଖେ ଅଦ୍ଭୁତ ଚମତ୍କୃତ,
ଶୁଣି, ତୁମର କଥା ମୁଁ ଲେଖେ ।"

( 'ତୁମେ' ଆଧୁନିକ ଓଡ଼ିଆ କବିତା ପୃ–୩୧୦)

ସେଇ କଥା'ନ୍ତି କବି ନିର୍ମଳା, ଅପାର୍ଥିବ ପ୍ରେମିକର ସ୍ପର୍ଶ ପାଇଁ ପାଗଳିନୀ, ବିରହରେ ସେ ଅଭିମାନିନୀ । ନିଜ ଅନ୍ତରର ଦ୍ୱାର ଉନ୍ମୁକ୍ତ କରି ଫେରିଯାଇଥିବା ସେଇ ଅପାର୍ଥିବ ପ୍ରେମିକକୁ ଆଉ ଥରେ ଗ୍ରହଣ ନ କରିବାକୁ ଝାଣପଣ କରି ବସିଛି । ସେଠି ତା'ର ଅଭିମାନ ନିତାନ୍ତ ମାର୍ମିକ ।

"ମୁଁ ତାକୁ ଭଲପାଏ·ସେ କଥା ସେ ଜାଣଇ
ଜାଣି ଶୁଣି ମୋ ବୁକୁରେ ଆଘାତ ସେ ହାଣଇ
ଜାଣି ଶୁଣି ମତେ ଛାଡ଼ି ଦୂରେ ଦୂରେ ଯାଏ ଚାଲି ।"
( 'ମୁଁ ତାକୁ ଭଲପାଏ' : ଆଧୁନିକ ଓଡ଼ିଆ କବିତା ପୃ-୩୦୯ )

ପ୍ରେମିକ ଇଚ୍ଛାକୃତ ଅବହେଳା ପାଇଁ କବି ହୋଇଛି ନିର୍ମମ କଠୋର, ସ୍ଥିର କରିଛି :

'ଦୁଆର ମୁଁ ଖୋଲିବି ନ ଫେରିଲେ ସେ ଏଥର' । କିନ୍ତୁ ପ୍ରେମିକାର ଏ ଅଭିମାନ ବା କେତେଦିନ ? ପ୍ରିୟ କଣ୍ଠ ସବାଗର ଡାକ ଶୁଣିବାରେ ପ୍ରତୀକ୍ଷମାଣା ପ୍ରେମିକା ଯେତେବେଳେ ଦ୍ୱାର ଖୋଲି ବାହାରକୁ ଯାଇ ତା'ର ପ୍ରେମିକକୁ ଖୋଜିଛି, ସେଠି ସେ ତାକୁ ଆଉ ପାଇନି । ପ୍ରେମିକ ହଜିଯାଇଛି ବିଶ୍ୱର ଅନନ୍ତ ସବୁଜିମାରେ, ଭୂମାର ଅଖଣ୍ଡ ପ୍ରାଣସତ୍ତ୍ୱରେ । ପ୍ରେମିକାର ନୟନରେ ଉଚ୍ଛୁଳିଛି ଅମାନିଆ ଜୁଆର । ଏଇ ଜୁଆରର ଉଦ୍‌ବେଳନ ନାରୀକବି ନିର୍ମଳାଙ୍କ ଚିତ୍ତରେ ରହସ୍ୟବାଦୀ ପ୍ରେମର ସ୍ୱରୂପକୁ ଉନ୍ମୋଚିତ କରିଛି । ପ୍ରେମର ଅତୀନ୍ଦ୍ରିୟ ଆକର୍ଷଣ ତାଙ୍କ କାବ୍ୟ ସାହିତ୍ୟରେ ସୃଷ୍ଟି କରିଛି ଉଚ୍ଛଳ ବାରିଧାରା । ସ୍ୱଳ୍ପ ରଚନା ଭିତରେ ପ୍ରେମର ସନାତନ ଆବେଗକୁ ରୂପାୟିତ କରିଛନ୍ତି କବି । ରୂପାୟନର ଧାରା ଓ ପ୍ରକାଶର ଟେକ୍‌ନିକ୍ ନୂତନ, କିନ୍ତୁ ଚିନ୍ତନଟି ପାରଂପରିକ । ନାରୀକବିର କାବ୍ୟ ସାଧନାରେ ନିର୍ମଳାଙ୍କ ସ୍ଥାନ ଅପାଂକ୍ତେୟ ନୁହେଁ ସତ; କିନ୍ତୁ ସାଂପ୍ରତିକତାକୁ କେତେଦୂର ପ୍ରତିଫଳନ କରିଛନ୍ତି, ତାର ବିଚାରବେଳେ ବିଚାରକ ପର୍ଯ୍ୟାପ୍ତ ଉପାଦାନ ପାଇ ପାରେନା । ଚିନ୍ତାକ୍ଷେତ୍ରରେ ନିର୍ମଳା ଖୁବ୍ କ୍ଲାସିକାଲ୍ ଓ ପରିବେଷଣ କଳାରେ ସେ ଆଧୁନିକ ।

ସମୟର ସାଂପ୍ରତିକ ସ୍ୱରୂପକୁ ଶ୍ରୀମତୀ ବ୍ରହ୍ମୋତ୍ତରୀ ମହାନ୍ତି ଗମ୍ଭୀର ଭାବେ ଉପଲବ୍ଧି କରିଛନ୍ତି । ପାରଂପରିକ ବିଶ୍ୱାସବୋଧରୁ ଜନ୍ମ ଲଭି ମୁଦ୍ଧା ସେ ନିଜକୁ ଓ ନିଜ ଶତାବ୍ଦୀକୁ ଆଦୌ ଭୁଲି ପାରିନାହାନ୍ତି । ଶତାବ୍ଦୀର ଆଲୋଡ଼ନ

ଓ ଶତମୁଖୀ ଭାବଧାରାର ଗୁଞ୍ଜରଣ ତାଙ୍କ କବିତାରେ ସ୍ପଷ୍ଟତର ହୋଇ ଉଠିଛି । ନିଜକୁ ଆବିଷ୍କାର କରିବାରେ ସେ ବେଶୀ ଆଗ୍ରହୀ । ବ୍ୟକ୍ତିସତ୍ତ୍ୱରେ ବିଶ୍ୱସତ୍ତ୍ୱର ପ୍ରତିବିମ୍ବନ ତାଙ୍କର କଳା । ନାରୀ ନାରୀତ୍ୱର ବିଶ୍ୱର ବୋଧକୁ, ନାରୀ ବ୍ୟକ୍ତିତ୍ୱର ସ୍ୱାଭିମାନକୁ ନିଃସଙ୍କୋଚରେ ପ୍ରକାଶ କରିଛନ୍ତି ବ୍ରହ୍ମୋତ୍ତରୀ । ନାରୀ ବ୍ୟକ୍ତିତ୍ୱର ଜାୟାପ୍ରେମ ଅକ୍ଷୟ । ଜଡ଼ର ଭଙ୍ଗୁର ସତ୍ତାକୁ ଦାମ୍ପତ୍ୟ ପ୍ରେମର ଚିନ୍ମୟ ଅନ୍ତରଙ୍ଗତାରେ ଆରୋପି ଯେଉଁମାନେ ଅବସ୍ତୁରେ ବସ୍ତୁର ବିଗ୍ରହକୁ ଯୋଡ଼ିଦେବାକୁ ଚେଷ୍ଟା କରିଛନ୍ତି, ନାରୀକବିର ଉପଲବ୍ଧି ସେମାନଙ୍କ ଚିନ୍ତନକୁ ଅସ୍ୱୀକାର କରିଛି । ବିବାହର ପରମୁହୂର୍ତ୍ତରୁ ସ୍ୱାମୀ, ସ୍ତ୍ରୀ ପୁରୁଣା ହୁଅନ୍ତି । ପୁରୁଣା ହୁଏ ସେମାନଙ୍କ ସକଳ ଯୌତୁକ, ବସ୍ତୁର ଅସ୍ତି ହଜେ ଏବଂ ଦେହ ଲଭେ ଜରାର ଯନ୍ତ୍ରଣା । ଜାୟା ଜନନୀ ଜନକର ଗୁରୁଦାୟିତ୍ୱ ହୁଏତ କ୍ରମେ କ୍ରମେ ସ୍ଥବିର ହୁଏ । ବୟସର ବଳୟରେ ଘୂରି ଘୂରି ସେ ହୁଏତ ଫିକା ପଡ଼ିଯାଏ । ଏମିତି ତ ବାର୍ଦ୍ଧକ୍ୟ ବୋଧ । ପୁରୁଣା ହେବା ଏମାନଙ୍କ ନିକଟ ସ୍ୱାଭାବିକ । କିନ୍ତୁ ଦାମ୍ପତ୍ୟ ପ୍ରେମ.....

"ଏବେ ବି ନାହିଁ କି ସତେ ଦୁହିଁଙ୍କ ନୟନେ
ସେଇ ପହିଲି ରାତିର ନିଶା ପ୍ରେମ ମଦିରା ।"

ଦେହରେ କଳଙ୍କ ଲାଗେ, କିନ୍ତୁ ଆମ ମନଟିକ ସେମିତି ସବୁଜ, ଆହୁରି ସବୁଜ ହୁଏ, ଆହୁରି ସୁନ୍ଦର ହୁଏ ଦିନ ଯେତେ ଯାଏ । ଦୁଇଟି ହୃଦୟତଳେ ସ୍ନେହ ଓ ଅବେଗ କ୍ରମେ ଜମାଟ ବାନ୍ଧୁଛି, ଦୁଇଟି ମନ ତ ନିତି ପ୍ରତି ମୁହୂର୍ତ୍ତରେ ନୂତନର ପରିଚୟ ପାଏ ।

('ଅକ୍ଷୟ': ସମସାମୟିକ ଓଡ଼ିଆ ପ୍ରେମ କବିତା ପୃ. ୧୬୪-୧୬୫)

ଦାମ୍ପତ୍ୟ ପ୍ରେମର କ୍ଷୟ ନାହିଁ । ଏ ମନ ଭିତରେ ସେ ଅକ୍ଷୟ-ସୁକୁମାର । ମନକୁ ବୁଝିବା ଖୁବ୍ କଠିନ । ମନ ମାୟାମୃଗ, ଅନେକ ସ୍ତର, ଉପସ୍ତର ଓ ରୂପ ଏହାର । ଚେତନ, ଅଚେତନ ଓ ଅବଚେତନ ମନର ଅବସ୍ଥା, ତାର ଭିତରେ ମଣିଷ ନିଜକୁ ଲୁଚାଏ । ଚେତନାରେ ଅବଚେତନକୁ ପ୍ରକାଶ କରେ । ପ୍ରକାଶ୍ୟରେ ମିଥ୍ୟାକୁ ଓ ଅସ୍ପଷ୍ଟତାକୁ ଘୋଷଣା କରେ ସେ । ଏ ଅସ୍ପଷ୍ଟତା ହିଁ ତା' ଅବଚେତନ ମନର କାହାଣୀ । ତା'ର କଥା କବିଙ୍କ 'ହଠାତ୍ ଗୋଡ଼ ଖସିଯିବାପରେ' କବିତାରେ ପ୍ରକାଶିତ । ପ୍ରତାରଣା ଓ

ସିଚ୍ଛନ୍ନିତା ମନ ଏ ମଣିଷର । ଯେତେ ଦେଖିଲେ ବି ଦେଖି ହୁଏନା ଏ ମନର ସ୍ୱରୂପ । ତା'ର ଉପଲବ୍ଧି :

"ମୋ ମନକୁ ଦେଖିଲି ମୁଁ
ଯେତେ ପାରେ ନିଖାର ନିଖାର
ତଥାପି ସ୍ୱରୂପ ତା'ର
ଦେଖି ବି ତ ଦେଖି ହେଲା ନାହିଁ ।"

ମନସ୍ତତ୍ତ୍ୱର ଏ ସୂକ୍ଷ୍ମ ଧାରଣାଟିକୁ ନାୟକବିଙ୍କର ଅନୁଭୂତି ଖୁବ୍ ସହଜରେ ଗ୍ରହଣ କରି ପାରିଛି ।

ନାୟକବି ବ୍ରହ୍ମୋତ୍ରୀ ଉଁଝାରି ଦେଖିଛନ୍ତି ଅନନ୍ତ ପ୍ରେମିକା ନାରୀର ବ୍ୟକ୍ତିତ୍ୱକୁ । ପ୍ରେମିକା ଦେହବାସୀ କାମନାର ଅଗ୍ନିଶିଖା, ପ୍ରେମିକ ଭଲପାଏ ନାରୀକୁ, ତା ନୀଳ ନୟନରେ ସ୍ୱପ୍ନ ଦେଖେ, ଚରଣରେ ନର୍ତ୍ତନରେ ପଦ୍ମର ବିକାଶ ଅନୁଭବ କରେ ଓ ନବନୀତ ତନୁର ପରଶରେ ପ୍ରଶ୍ରୟ ଦେଖେ । ମାତ୍ର ପ୍ରେମର ଏସବୁ ଉପଚାର ନାୟକବି ବ୍ରହ୍ମୋତ୍ରୀଙ୍କ ନିକଟରେ ବିରାଟ ପ୍ରଶ୍ନବାଚୀ ସୃଷ୍ଟି କରିଛି । ପ୍ରେମର ପ୍ରତିମା ନାରୀ, ପ୍ରେମିକର ଅହ୍ଲାଦ ସ୍ୱରୂପା, ଦେହ ପାଇଁ ନା ମନ ପାଇଁ ! ପ୍ରେମର ସ୍ଥିତି କେଉଁଠି—ଦେହରେ ନା ମନରେ ? ହଠାତ୍ ଯଦି ନାରୀ ତା'ର ରତିରୂପ ହରାଇ ବସେ ତନୁର ଚନ୍ଦ୍ରମା ଯଦି ଲିଭିଯାଏ, ତେବେ :

"ଗଳିତ ଅଙ୍ଗ ମୋ, ମତ୍ତ ଆଲିଙ୍ଗନେ ସତେ ରୁପିରଖି
ମଦନ ଉନ୍ମତ୍ତ ହେବ ସ୍ପର୍ଶି ସ୍ୱର୍ଗ ପ୍ରଣୟର ସୀମା ।"

ପ୍ରେମର ଜିଜ୍ଞାସା ନେଇ ପ୍ରେମିକ ହୁଏତ ଏଠାରେ ଯୁକ୍ତି ବାଢ଼ିପାରେ, ତର୍କ କରି କହିପାରେ 'ପ୍ରେମ ଗୁହ୍ୟେ ମନ; ତନୁ ନୁହେଁ"—କିନ୍ତୁ କେଉଁଟା ସତ୍ୟ ?

"କାମନା ଜାଗ୍ରତ ହୁଏ ତନୁ ଦେଖି ଅବା ହେରି ମନ
ରୂପାନ୍ଧେ ଉନ୍ମତ୍ତ ଚିତ୍ତ କରେ କେବେ ମନର ବିଚାର ।"

( 'ପ୍ରଶ୍ନ—ଆଧୁନିକ ଓଡ଼ିଆ କବିତା—ପୃ: ୬୨୦ )

ପ୍ରେମ ସମ୍ପର୍କରେ କବିଙ୍କର ଧାରଣା ନିହାତି ମୌଳିକ । "ଅକସ୍ମାତ୍ ପ୍ରେମ ଯାହା ତାହା ଖାଲି ଶରୀର ବିକୃତି " ଏହା ହିଁ ତାଙ୍କ ଦର୍ଶନ ।

ମଣିଷର ଏ ଦେହରେ ଇଚ୍ଛାର ଯେଉଁ ଘୋଡ଼ାଦୌଡ଼ ଓ ପାଲଟି ଖେଳ, ସେଠି ଅଛି ପାଶବିକ ଆକର୍ଷଣ ବେଶି । ଏଇ ପାଶବିକ ଆକର୍ଷଣକୁ ସ୍ୱାପକ ରକ୍ତରେ ଲିଖାଇବା ଏବଂ ଆମେ ସମସ୍ତେ ଯେନବା ଜୟମାଳା, ଜଣକ ଗୌରବତଳେ ଅଜସ୍ରଙ୍କ କଲ୍ୟାଣକୁ ବରଣ କର, ଏହା ହିଁ କବିର ମର୍ମୋକ୍ତି ଏ ଯୁଗ ପାଇଁ ।

ସାଂପ୍ରତିକ ଯୁଗ ଆତ୍ମପ୍ରବଞ୍ଚନା ଓ ପ୍ରତାରଣାର ଯୁଗ । ଅଶ୍ରୁରେ ହୃଦୟ ନାହିଁ । ହସରେ ଭରିଛି କୃତ୍ରିମତା ଏବଂ ଅନେକ କିଛି ମନେରଖା ଅଭିନୟ । ହୃଦୟର ଆଲୋଡ଼ନରୁ ଯେଉଁ ହସ ଓ ଅଶ୍ରୁର ପ୍ରକାଶ, ତାହା ଆଜି ମିଥ୍ୟାଗୃହର ଗ୍ରୈବାଗୃହରେ ବନ୍ଦୀ । ଏହାର ମୂଲ୍ୟ କେତେ ଏଥିପାଇଁ ବିଚାର ଆବଶ୍ୟକ । ହସ ଓ ଅଶ୍ରୁର ପ୍ରକାଶ ପାଇଁ ଆଜି ବିଚାର, କଳ୍ପନା-ଜଳ୍ପନା ଓ ପୂର୍ବ ସିଦ୍ଧାନ୍ତର ଆବଶ୍ୟକତା ଅନୁଭୂତ ହେଉଛି । ସାଂପ୍ରତିକ ବିଶ୍ୱର ମଣିଷ ପ୍ରବୃତ୍ତିରେ ଏହା ଏକ ଦୁର୍ଘଟଣା । ଏ ପ୍ରକାର ହସ ଓ ଅଶ୍ରୁରେ ନିଜ ଆତ୍ମାକୁ ସନ୍ତୁଷ୍ଟ କରିବା ଅସମ୍ଭବ । ଏ ଯୁଗର ମଣିଷ ମନ ଯେହେତୁ ପରିବ୍ୟାପ୍ତ କିମ୍ବା ଆତ୍ମମୂର ସଙ୍କୀର୍ଣ୍ଣ, ତେଣୁ ସେ ହସ ଅଶ୍ରୁର ଉଚ୍ଛଳତାକୁ ନେଇ ପାରୁନାହିଁ । ତା'ର ଶକ୍ତି ପରିବ୍ୟାପ୍ତ ହୋଇଥିବାରୁ ବ୍ୟାପକ ଭୂମି ଉପରେ ଠିଆ ହୋଇ ସେ ସାଧାରଣ ଅସ୍ଥିରତାକୁ ଦୃଢ଼ତାର ସହିତ ସମ୍ମୁଖୀନ ହେଉଛି । ତେଣୁ ଭୁଲଯାଉଛି ଅଶ୍ରୁମୋଚନ ବା ହସ ପ୍ରକାଶ କିମ୍ବା କେଉଁଠି ସଙ୍କୀର୍ଣ୍ଣତାର ମନ ହୃଦୟକୁ ମଣିଷ ପାଇଁ ଉନ୍ମୁକ୍ତ କରି ପାରୁ ନାହିଁ । ସେଥିପାଇଁ ସେ ମିଥ୍ୟାଗୃହରର ଆଶ୍ରୟ ନେଉଛି । ତା'ର ପ୍ରତିଧ୍ୱନି ବ୍ରହ୍ମୋତ୍ତରୀ ମହାତ୍ମଙ୍କର 'ଜନକ ପ୍ରହଳକୋ' :

"ଆମ ଏଇ ମସ୍ତିଷ୍କର ଅସମ୍ଭବ ବିସ୍ତୃତି ଘଟିଛି
ସେଥିଲାଗି ହୃଦୟର ଦ୍ୱାର ଦୃଢ଼ ଅବରୁଦ୍ଧ ରହେ
ଅଥବା ମସ୍ତିଷ୍କ କକ୍ଷ ଖୁବ୍ ବେଶୀ ସଙ୍କୀର୍ଣ୍ଣ ହେବାରୁ
ହୃଦୟର ପ୍ରସାରଣେ ଇଚ୍ଛାକୃତ ବ୍ୟାଘାତ ଉପୁଜେ" ?

ମଣିଷ ମଣିଷ ଲାଗି ସତେ ହାୟ ! କେତେ ଦୂର ମିଥ୍ୟା ହୋଇପାରେ ? ଏହା ହିଁ ବାସ୍ତବିକ ସାଂପ୍ରତିକ ଶତାବ୍ଦୀର ସତ୍ୟ ଏବଂ ସେଇ ସାଂପ୍ରତିକ ଆଚରଣର ଅଭିବ୍ୟକ୍ତି ବ୍ରହ୍ମୋତ୍ତରୀଙ୍କ କବିତାରେ ସୁସ୍ପଷ୍ଟ ।

ପରିପୂର୍ଣ୍ଣ ତୃପ୍ତି ପାଇଁ, ମଣିଷର ଚିରନ୍ତନ ଆକର୍ଷଣ ମିଳନର ମାଦକତା ପାଇଁ ଅଲୁଣ୍ଠିତ ଅଭୀପ୍ସା ଯାହା ଯୁଗ ଯୁଗ ଧରି ମଣିଷର କାମନା କେନ୍ଦ୍ରରେ ଗଚ୍ଛିତ ସେଇ ସମ୍ପର୍କରେ ନାରୀକବି ବ୍ରହ୍ମୋତ୍ରୀ ମହାନ୍ତି ଭିନ୍ନ ମତ ପୋଷଣ କରିଛନ୍ତି । ତାଙ୍କ ଦୃଷ୍ଟିରେ ପୂର୍ଣ୍ଣତାଲାଭଦ୍ୱାରା ମଣିଷର ଜିଗୀଷା ଶୀଳତା ନଷ୍ଟ ହୁଏ, ଲୁପ୍ତହୁଏ ପ୍ରାଣର ଆବେଗ । ମିଳନ ପାଇଁ ଅଭିଳଷିତ ମଣିଷ ମିଳନରୁ କିଛି ପାଏନା, ବରଂ ମିଳନ ମୁହୂର୍ତ୍ତ ସ୍ପର୍ଶ ତତ୍‌କ୍ଷଣାତ୍ ସେନଯାଏ ଉତ୍କଣ୍ଠିତ ମନର ଅନନ୍ତ ଉଦ୍‌ବେଗକୁ । ଯାତ୍ରାପଥ ଶେଷ ହେଲେ ଉତ୍ସରୁ ମନର ଗୁଞ୍ଜରଣ ଆଉ ଶୁଭେନା । ବୁଭୁକ୍ଷା ମନ ଶାନ୍ତ ହୁଏ ପୂର୍ଣ୍ଣତା ଓ ତୃପ୍ତିର ତାଳୁକରେ ତା' ହେଲେ ମଣିଷର ଉଦ୍ୟମ ହଜିଯାଏ ସ୍ଥାଣୁତ୍ୱର ବିଷପିଚ ଅନ୍ଧାର ଭିତରେ, ସଂଶୟ ଓ ସଂଘର୍ଷ ବିନା ନବ ମଣିଷକୁ ଜନ୍ମ ଦିଏ ? ଏହାର ଅନ୍ୟଥାରେ ମଣିଷ ତ ନିଷ୍କ୍ରିୟ । ଏହାହିଁ ସାଂପ୍ରତିକ ଯୁଗର ପ୍ରବୃତ୍ତି । ଏହି ପ୍ରବୃତ୍ତିକୁ ଉପଲବ୍ଧି କରି ପାରିଛନ୍ତି କବି ବ୍ରହ୍ମୋତ୍ରୀ । ('ନାରୀ-କାବ୍ୟ-୧୯୬୩)

ନାରୀକବିଙ୍କ କଣ୍ଠ ସ୍ପଷ୍ଟ । ମାନବୀୟ ପ୍ରବୃତ୍ତିର ଆଭ୍ୟନ୍ତରୀଣ ସତ୍ୟ ଉନ୍ମୋଚନରେ ନିହାତି ସ୍ୱାଧୀନା ସେ । ନାରୀକବି ନିଜେ ଅନୁଭବ କରିଛନ୍ତି ନାରୀର ସଂଭୋଗମୟୀ ରୂପ । ଏଇ ନାରୀ ଆଦି ସୃଷ୍ଟିରେ ରୂପବୃଷ୍ଟିର କାମନା ଓ ରତି ଉଚ୍ଛାସର ବାସନା, ସଂଭୋଗରେ ସୃଷ୍ଟିର ମଧୁ ଝଙ୍କାର ଗୁଞ୍ଜରିତ । ଉଷା ସନ୍ଧ୍ୟାର ମୁଗ୍‌ଧ ପ୍ରତିମା ନାରୀ ରୂପ ସୃଷ୍ଟିର ରାଗିଣୀ ଏବଂ କବିର ପ୍ରୀତି କଳ୍ପନା । ଉଦ୍‌ଗତ ତା'ର ଯୌବନ ଭୋଗ ପାଇଁ ଏବଂ ସୃଷ୍ଟି ପାଇଁ; ବ୍ରହ୍ମୋତ୍ରୀ ମହାନ୍ତିଙ୍କ କଣ୍ଠରୁ ଏହାର ସ୍ପଷ୍ଟ ଉଚ୍ଚାରଣ 'ସେ ଓ ମୁଁ' କବିତାରେ ପ୍ରତିଫଳିତ :

"ଉଦ୍‌ଗତ ମୋର ଯୌବନେ ଗୃଢ଼ି ଚାରଣ
ମନ୍ଥନ କଲି ନୀଳ ଆକାଶର ସାଗର
ଭେଦ ବିକଶିଲେ ଚନ୍ଦ୍ର, ତାରକା ତପନ
ରୂପସୃଷ୍ଟିରେ ଶତ ସୁଷମାର ଆକର ।"

ସଂଭୋଗ ଲିପ୍‌ସାରେ ପ୍ରମତ୍ତ ସଂଭୋଗ ମୁହୂର୍ତ୍ତରେ ଶିହରଣର ମଧୁରତା ପାନ କରି ଆତ୍ମହରା ହୋଇଥାଏ । ଏକାକାର ହୁଏ ଏକ ତନ୍ମୟରେ । ନାରୀର ଏଇ ସଂଭୋଗ ସଙ୍କଳ୍ପକୁ ଲୁକ୍‌କାୟିତ ରଖିପାରିନାହାନ୍ତି କବି ବ୍ରହ୍ମୋତ୍ରୀ ।

"ଅଚେତନ ହେଲି ଏକାକାର ଏକ ଜନ୍ମରେ
ନିମିଷକେ ଭୁଲି ସକଳ ସଜ୍ଞା ବଧୂରେ
( 'ସେ ଓ ମୁଁ' — ସାଂପ୍ରାତିକ ପ୍ରେମ କବିତା-୯୮୩ପୃ: )

ସତ କଥା ନାରୀ ପ୍ରିୟତମା ମାନସୀ କିନ୍ତୁ ସେ ତ ପୁଣି ଜାୟା ଓ ଜନନୀ । ମାତୃତ୍ୱାନୁଭୂତି ନାରୀତ୍ୱର ନିର୍ଯ୍ୟାସ । ତା'ର ଅଭାବବୋଧରେ ସେ ବ୍ୟାକୁଳିତା ହୁଏ । ସ୍ୱଜଗତରେ ସେ ଆକାଂକ୍ଷା ଯଦି ଚରିତାର୍ଥ ନହୁଏ, ନିଃସନ୍ତାନତ୍ୱର ବ୍ୟର୍ଥତାବୋଧକୁ ସହ୍ୟ କରି ନପାରି ସେ କଳ୍ପନାର ବିଳାସ ବେଳାଭୂମିରେ ତାକୁ ଚରିତାର୍ଥ କରେ । ସ୍ୱପ୍ନର ଅବଚେତନ ଜଗତରେ ଏଇ ଅତୃପ୍ତି ତୃପ୍ତିର ସନ୍ତୋଷ ଲାଭକରେ । ଏ କଥା ପ୍ରିୟତମ ବୁଝନ୍ତୁ କି ନବୁଝନ୍ତୁ ଏହା ଯେ ନାରୀ ଜୀବନର ପରମ ସତ୍ୟ, ଏଥିରେ ସନ୍ଦେହ ନାହିଁ । ପୁରୁଷର ଅନୁଭବ ଏ କ୍ଷେତ୍ରରେ ନାରୀଠାରୁ ନିହାତି ଭିନ୍ନ । ଅବଚେତନ ମନର ନିଭୃତକୂଳେ ବସି ସ୍ୱପ୍ନ ଦେଖୁଥିବା ନାରୀର ପିଠିପଟୁ ଧାଇଁ ଧାଇଁ ଆସି କୌଣସି ଶିଶୁ ଯଦି ତାକୁ ଚେତେଇଦିଏ 'ଆସିଛି, ମତେ ଗେଲକର, କୋଳକର, ଆଦର କର' ଏବଂ ଯଦି କହେ 'ଏତେ ଦିନ ହେଲା ମତେ ଭୁଲି ରହିଛ କିପରି ?' ସେଥିରେ ନାରୀତ୍ୱ ପୁଲକିତ ହୋଇ ଉଠିବା ଏବଂ ଶିଶୁର ସ୍ପର୍ଶରେ ଅଙ୍ଗେ ଅଙ୍ଗେ ଅପୂର୍ବ ପୁଲକର ଜାଗରଣ ଖେଳିଯିବା ନାରୀ ମନର ଏକ ସ୍ୱାଭାବିକ ଅବସ୍ଥା । ସେଇ ଅବସ୍ଥାର ଉଚ୍ଛ୍ୱାସରେ ନାରୀ ତାକୁ ପାଖକୁ ଟାଣି ନେଇଥାଏ :

"ବିପୁଳ ଆବେଗେ ତାକୁ ଟାଣି ନେଇ
କୋଳ ଭିତରକୁ
ବୁକୁରେ ଜଡ଼ାଇ ଧରି ବାରମ୍ବାର
ଚୋକ ଚାରେ ଦେଲି ।"

ଏଇ ପ୍ରକଳ୍ପିତ ସ୍ୱପ୍ନରେ ପ୍ରିୟତମଙ୍କଠାରୁ ହଠାତ୍ ଧମକର :

"କେଉଁ ଏକ ବାରବୁଲା ଟୋକାଟା ସାଥିରେ
ସୁଆଙ୍ଗ ଲଗିଛି ଯେତେ ବାଜେ ରୁଚି
ଗୁଡ଼ ଦିଅ ତାକୁ ।"

ଶୁଣି କେଉଁ ନାରୀର ଅନ୍ତର ବାହ୍ମନ ନ ଉଠିବ ? ବାସ୍ତବିକ ନାରୀର ଅନ୍ତର ଉପଲବ୍ଧିରେ ପୁରୁଷ ଏଠି ଅକ୍ଷମ ନୁହେଁ କି ? ନାରୀର ଅନ୍ତରରେ

ସୃଜନର ଆକାଂକ୍ଷା ଅକ୍ଷୟ ଓ ଅବ୍ୟୟ । ସେ କଥା ସ୍ୱୀକାର କରିଛନ୍ତି କବି ନିଜ କବିତାରେ :

"ମୋ ଭିତରେ ସୃଜନର ଆକାଂକ୍ଷା ଅକ୍ଷୟ ଅବ୍ୟୟ ସୃଷ୍ଟିରେ ଅଭାବବୋଧ ଜାଳିପାରେ ଏ ମନ ଦେହକୁ କିନ୍ତୁ ସେ ଜୀବନ କ'ଣ ସେତିକିରେ ସୀମିତ ରହିବ ?"

( 'ଏକ ସ୍ୱପ୍ନ ଓ ଭଗ୍ନ ସଙ୍ଗୀ' ଶାରଦୀୟ ଝଙ୍କାର-୧୯୬୭ )

ବ୍ୟକ୍ତି ଓ ବସ୍ତୁର ବ୍ୟବଧାନ ଏବଂ ସେଥିରୁ ଜନ୍ମ ନେଇଥିବା ଅଭାବବୋଧର ଯନ୍ତ୍ରଣା ମଣିଷର ପ୍ରଶାନ୍ତ ମନକୁ ମ୍ଳାନ କରେ । ଅଭାବବୋଧ ହେତୁ ସେ ବ୍ୟସ୍ତ ଓ ବ୍ୟାକୁଳ ହୁଏ । ଏହା ତତ୍ତ୍ୱର କଥା ନୁହେଁ କି ଜ୍ଞାନର କଥା ନୁହେଁ କି ଦର୍ଶନର କଥା ନୁହେଁ । ସେହି ମାନସିକ ଅଭାବବୋଧ ନାୟକବିର ଅନ୍ତରାତ୍ମାକୁ ଆଲୋଡ଼ିତ କରିଛି । ନାୟକବିର କାବ୍ୟାତ୍ମା ନାୟିକାକୁ ସ୍ପଷ୍ଟଭାବରେ ପ୍ରକାଶ କରିଛି :

"ମୁଁ କହୁନି ଜ୍ଞାନ କଥା, ତତ୍ତ୍ୱ କଥା, ଦର୍ଶନର କଥା
ମୁଁ କହୁଛି ଅନୁଭୂତି ଲବ୍ଧ ମୋର ଚିରନ୍ତନ
ବିରହ ବ୍ୟଥା
ଏମିତି ଅଭାବ ଯାର ଯନ୍ତ୍ରଣାରେ ଗୋପୀ କାନ୍ଦେ
ଅଶ୍ରୁ ଜଳେ ଭାସି
ସେ ଅଭାବେ ଚନ୍ଦ୍ରସେଣା ମିଥ୍ୟା ହୁଏ,
ସତ୍ୟ ହୁଏ ଗନ୍ଧ ବନୋଦୟା,
ଅଦର୍ଶନେ ଚନୟର ଯଶୋଦାର ଆକୁଳ ଜିଜ୍ଞାସା ।
ସୁଦାମା ପାର୍ଥୀକ ହୁଏ ବ୍ୟାକୁଳତା ବନ୍ଧୁ ଦର୍ଶନର ।

ଏଇ ଅଭାବବୋଧର ଚିରନ୍ତନ ଶୋଭାଯାତ୍ରା ସବୁ ଯୁଗରେ ସତ୍ୟ ହୋଇ ଦେଖାଦେଇଛି । ନାୟକବିର ଅନ୍ତର ସେ ଉଦ୍‌ବେଳନରୁ ମୁକ୍ତି ପାଇପାରିନି ।

"ସେଇ ସେ ଅଭାବବୋଧ ଉପହାସ ମଳେ କରି
ପଛେ ଆସିଥିଲା ଶିଶୁ ରୂପେ କୋଳ ମୋର ପୂର୍ଣ୍ଣ କରିବାକୁ ।"

କବିର ଏଇ ଆତ୍ମୋକ୍ତି ସତ୍ତାର ଉଜ୍ଜ୍ୱଳ ସୀମାରେଖାକୁ ସ୍ପର୍ଶ କରିଛି । ଜୀବନବୃନ୍ତର ଦୁଇଟି ସ୍ତବକ ପୁରୁଷ ଓ ପ୍ରିୟା ଯାହାଙ୍କର ସାଧନାପଥର

ସ୍ରୋତସ୍ଵିନୀ ଉଦ୍ଭାବନା ଦୁଇଟି କୂଳର ବଳୟ । ସେମାନେ କେହି କାହାର ପ୍ରତିବନ୍ଧକ ନୁହଁନ୍ତି; ବରଂ ପରିପୂରକ । ନାରୀତ୍ଵର ଆତ୍ମକଥା ବ୍ରହ୍ମୋତ୍ରୀଙ୍କ କବିତାରେ ପୂର୍ଣ୍ଣ ପ୍ରକାଶ ଲଭି କରିଛି :

"ସମସ୍ତ ଜୀବନ ଆମ ସାଧନାର ଶୁଦ୍ଧ ତପସ୍ୟାର
ଚଲାପଥେ କେହି କାରେ ସାହାଯ୍ୟ ନ କରୁ ପଛେ
ପ୍ରତିବନ୍ଧ ହେବା ନ କଦାପି ।"

ଏଇ ଅଭୟ ବାଣୀ ଅଗଣିତ ନାରୀ ଜୀବନପାଇଁ ଯେପରି ସୂଚିତ, କବିଙ୍କ ବ୍ୟକ୍ତି ଜୀବନରେ ମଧ୍ୟ ସେହିପରି ପ୍ରତିଧ୍ଵନିତ । ନାରୀକବି ବ୍ରହ୍ମୋତ୍ରୀ ଏ ଯୁଗର ସଫଳ କାବ୍ୟସ୍ରଷ୍ଟା ।

ଏଇ ସମୟର ସ୍ଵଚ୍ଛ ଦର୍ପଣରେ ଶ୍ରୀମତୀ ତୁଳସୀ ଦାସ, ସୁଜାତା ପ୍ରିୟମ୍ବଦା, ରଜନୀ ପଟ୍ଟନାୟକ, ଆଶାଲତା, ଗିରିବାଳା, ମନୋରମା ଏବଂ ଅନ୍ୟାନ୍ୟ ଅନେକ ନାରୀକବି ସେମାନଙ୍କର ସୃଷ୍ଟି-ପଦ୍ମକୁ ପ୍ରତିବିମ୍ବିତ କରିଛନ୍ତି । ଜୀବନ ଚିନ୍ତିତ ତୁଳସୀ ଦାସ ଖୋଜିଛନ୍ତି ମାନବିକତାର ମଧୁମାସ, ନିରାଶାର ଘନ ତମିସ୍ରାରେ ଏବଂ ଶୋଚନାର ବାତ୍ୟା ବଳୟରେ କବିଙ୍କର 'ଝଡ଼' କବିତାରେ ଅଶ୍ରୁ ଉଦ୍‌ବେଳିତ ନୟନରେ ପ୍ରତ୍ୟୟ ଅଞ୍ଜନ ବୋଳିବା ପାଇଁ, ମଶାଣି ମଡ଼ାଠାରେ ହସର ଉଚ୍ଛ୍ଵାସ ଫୁଟାଇବା ପାଇଁ ଯେଉଁ ସୃଜନ କାମନା ପୋଷଣ କରାଯାଇଛି, ତାହାହିଁ ତାଙ୍କ ଜୀବନର କାବ୍ୟିକ ପିପାସା । ଅଗ୍ରଗାମୀ ଜୀବନର ସ୍ଵାକ୍ଷର ତାଙ୍କ କବିତାରେ ପ୍ରତିଫଳିତ :

"କ୍ରମଶଃ ପୃଥିବୀ ସଙ୍ଗେ ଶ୍ରେଷ୍ଠ ହୋଇ ଆସେ
ସହସ୍ର ଯୋଜନ ପୁଣି ଜଣାଯାଏ ନୟନ ନିକଟେ ।"

ଏଇ କଥାର ଉପଲବ୍ଧି ଭିତରେ ମଣିଷର ଅଗ୍ରଗାମୀତ୍ଵ ସୂଚିତ । ତା'ର ଉଦ୍‌ଘୋଷଣା ତାଙ୍କର କାବ୍ୟଧର୍ମ । ପୁରାତନୀ ଅପସରର ମୃତ୍ୟୁ ହିଁ ତାଙ୍କ କାବ୍ୟଚିନ୍ତା; ତାଙ୍କ ଦୃଷ୍ଟିରେ ଆଜିର ଯୁଗ ବହ୍ନିବର୍ଣ୍ଣି ମାୟାମୃଗର ଯୁଗ । ଆତ୍ମମଗ୍ନତାରେ ଏ ସୃଷ୍ଟି ପ୍ରବଞ୍ଚିତ । କଂଶୁକ ପୂଜା ସାଂପ୍ରତିକ ଯୁଗ ଦୃଷ୍ଟିରେ ହୋଇଛି ବଡ଼ । କବି ସ୍ପଷ୍ଟବାଦୀ । ଏଇ ସ୍ପଷ୍ଟବାଦ 'ଅନ୍ୟକୁ ପ୍ରକାଶ କରିଛି ସିନା, ନିଜକୁ ଗୁପ୍ତ ରଖିଛି । ନାରୀତ୍ଵର ସାଧାରଣ ସତ୍ତାଟି ଲୁକ୍‌କାୟିତ ରହିଛି ତାଙ୍କ କବିତାରେ ।

ତେମାର ବକ୍ତବ୍ୟ ଭିତରେ ଯେଉଁ କେତେଜଣ ନାରୀକବିଙ୍କୁ ଆଲୋଚନା କରିଛୁ ସେମାନଙ୍କଠାରେ ଚେତନାର ବୈଚିତ୍ର ଓ ଉପଲବ୍ଧିର ବନ୍ଧ୍ୟତା ଲକ୍ଷ୍ୟ କରିଛୁ । ବିଦ୍ୟୁତ୍ପ୍ରଭା ଓ ବ୍ରହ୍ମୋତ୍ତରୀଙ୍କ ଭିନ୍ନ ଅନ୍ୟ ସମସ୍ତେ ପ୍ରାୟ ନିଜର ଆତ୍ମାଠାରୁ, ସ୍ୱଚରିତ୍ରଠାରୁ ଦୂରେଇ ଯାଇ ଦୁନିଆଁକୁ ଦେଖିବାକୁ ଚେଷ୍ଟା କରିଛନ୍ତି । ନାରୀଜୀବନର ଏକମାତ୍ର ସମ୍ବଳ ଯେ ମାତୃତ୍ୱ, ତା'ର ପ୍ରତିଫଳନ କବିମାନଙ୍କ କବିତାରେ ଖୁବ୍ କମ୍ । ଏ ନାରୀ କେବଳ ଭୋଗ୍ୟା ନୁହେଁ, ସୋହାଗିନୀ ନୁହେଁ, ସନ୍ତାନ ଧାରଣର ମର୍ଯ୍ୟାଦାରେ ସେ ମହୀୟସୀ । ମ୍ୟାଡ଼ାମ ବୋଭାରୀ ଭଳି ଲଗାମହୀନ ଜୀବନଧାରଣ ସହିତ ଲେଡି ମାକ୍‌ବେଥ୍‌ର ନୃଶଂସତା କମ୍ବା ଚମ୍ପାର ଚତୁରତା ନାରୀ ଚରିତ୍ରରେ ଥାଇପାରେ; କିନ୍ତୁ ସେ ଜନନୀ ଓ ସୃଷ୍ଟିକାରିଣୀ । ଯେଉଁ ସୃଷ୍ଟି ଆକାଂକ୍ଷା ନେଇ ଚିଲ୍ଲୀର ନାରୀକବି ଗାବ୍ରିଏଲା ମିସ୍ତ୍ରାଲ୍ 'Poem of the Són'ରେ ବ୍ୟକ୍ତ କରିଥିଲେ :

"'A son, a Son, o Son  
I wantad a Son of yours  
And mine. in those distant days  
of morning bliss  
When mine bones would trumble  
at yours least  
And my bow would glow with  
c radiant mist

ସେଇ ସ୍ପଷ୍ଟ ଉଚ୍ଚାରଣ ଓ ମନଖୋଲା ପ୍ରକାଶନ ଆଜିର ନାରୀ ଲେଖିକାଙ୍କଠାରେ କାହିଁ ? ନିଜର ସମସ୍ୟାକୁ ନିଜେ ଅନୁଭବ ନକରି ଅନ୍ୟକୁ ଅନୁଭବ କରିବାରେ ଯେପରି ତତ୍ପରତା ପ୍ରକାଶ ପାଉଛନ୍ତି, ସେଥିରୁ ଆଶଙ୍କା ହେଉଛି କିଛି କାଳ ଏପରି ଘଟିଲେ ହୁଏତ ଆମେ ଆମକୁ ବି ଭୁଲିଯିବା । ନିଜକୁ ବୁଝି ଅନ୍ୟକୁ ବୁଝାଇବାର ଉଦ୍ୟମ ସାଂପ୍ରତିକ ଯୁଗର ନାରୀକବି ତା'ର କାବ୍ୟ ସୃଷ୍ଟିରେ ସମ୍ଭବିତ କରୁ, ଏତିକି କାମନା । ※

— — —

॥ ଋତ୍ବୀ, ୧୯୭୧ ॥

---

* ଓଡ଼ିଆ ଯୁବ ଲେଖକ ସମ୍ମେଳନ-୧୯୭୯, ବଲାଙ୍ଗିର—ଲେଖିକାଆସର ୨୧. ୧. ୧୯୭୯ରେ ପ୍ରଦତ୍ତ ଅଭିଭାଷଣ ।

# ଦାନାପାଣି : ଏକ ଅଧ୍ୟୟନ

ବସ୍ତୁବାଦୀ ଦୁନିଆଁର ଅଭ୍ରାନ୍ତ ଆଲେଖ୍ୟ, ଏଇ ଦାନାପାଣି ଉପନ୍ୟାସରେ ପ୍ରତିଫଳିତ । ଏଥିରେ ମାନବ ଜୀବନର ଯେଉଁ ନିହିତ ଅଭୀପ୍ସା ଓ ଆକର୍ଷଣର ଦ୍ୱନ୍ଦ୍ୱ ସୃଷ୍ଟି କରାଯାଇଛି ଲେଖକଙ୍କ ଭାଷାରେ "ସେ ଦ୍ୱନ୍ଦ୍ୱର ନାଁ ଶାର୍ଦ୍ଦୂଳ ବିକ୍ରୀଡ଼ିତ ନୁହେଁ, ତା' ନାଁ ବୁକକରିଆର ପ୍ରମୋଶନ" ଆଧୁନିକ ମଣିଷର ଏଇ ମନୋଭାବକୁ ସକଳ ସ୍ତରରୁ ପର୍ଯ୍ୟବେକ୍ଷଣ କରି ତାହାର ଏକ ବାସ୍ତବ ରୂପାୟନ ପାଇଁ ଗୋପୀନାଥ ମହାନ୍ତି ଦାନାପାଣି ଉପନ୍ୟାସରେ ଯେଉଁ ପଦକ୍ଷେପ ନେଇଛନ୍ତି କେବଳ ତାହାର ମୂଲ୍ୟାୟନ ନୁହେଁ, ଦାନାପାଣିର ସାମଗ୍ରିକ ମୂଲ୍ୟାୟନ ହିଁ ଏହି ଆଲୋଚନାର ମୁଖ୍ୟ ଉଦ୍ଦେଶ୍ୟ ।

ଯୁଦ୍ଧୋତ୍ତର କାଳୀନ ମଣିଷ, ଲୁହାର ମଣିଷ, ତା' ମନରୁ ରୁଚି, ନୀତି, ଆଦର୍ଶ ଓ ସଂସ୍କୃତିର ଘଟିଛି ନିର୍ବାସନ । ଯେଉଁ ଯୁଗରେ ମାନବ ତା'ର ସ୍ଥିତି ସମ୍ବନ୍ଧରେ ସନ୍ଦିହାନ୍, ଅନ୍ନ ସଂସ୍ଥାନର ଅଭାବରୁ ଯେଉଁ ମଣିଷ ପୋକ ମାଛିପରି ଅକାଳରେ ଝଡିପଡେ, କୁକୁରପରି ହୁଏ ଦୂଷ୍ୟ ଓ ନିର୍ଯ୍ୟାତିତ, ସେ ମଣିଷ ଭାଗ୍ୟକୁ ଅପେକ୍ଷା କରି କଣ ଭାଗ୍ୟବାଦୀମାନଙ୍କ ଗହଣରେ ଧାଡ଼ି ବାନ୍ଧିବାକୁ ଧୈର୍ଯ୍ୟ ହରାଏ । ତେଣୁ ସେ ଲୋଡ଼େ ପ୍ରତିଯୋଗିତା । ଧାଡ଼ିର ସବୁଠାରୁ ପଛରେ ଥାଇ ମଧ୍ୟ ସୁବିଧା ଅନୁସାରେ ଆଗ ଲୋକଙ୍କୁ ଧକ୍କା ଦେଇ ଲକ୍ଷ୍ୟ ହାସଲ କରିପାରେ, ଯେପରି କରିଛି ବଳୀଦତ୍ତ । ଅନ୍ତରଙ୍ଗ ବନ୍ଧୁ ଏଙ୍କଟେଶ୍ୱର ବିରୁଦ୍ଧରେ ଅଯଥା ଚୁଗୁଲି କରିବା ଏହି କଥା ହିଁ ବଳୀଦତ୍ତ ପ୍ରମାଣ କରିଛି ।

ଦାନାପାଣିର ଯୁଦ୍ଧରେ ଆଗେଇବା ପାଇଁ କେବଳ ଚୁଗୁଲି ଯଥେଷ୍ଟ ନୁହେଁ । ତା'ର ଅନ୍ୟ ଏକ ଅଂଗ ଖୋସାମତି । ବଳୀଦତ୍ତ ଚକେଉଁଟିରେ ହେଲେ ପଛୁଆ ନୁହେଁ । ଶିବଙ୍କ ଦର୍ଶନ ପୂର୍ବରୁ ବାସୁଆ ବଳଦକୁ ପ୍ରଥମେ ଭେଟିଲା ପରି ଯେଉଁଠି ବଡ଼ ସାହେବଙ୍କ ପାଖକୁ ଯିବାକୁ ସାହାସ ଅଣ୍ଟିନ

ସେଠି ସେ ଖୋସାମଦ ଆରମ୍ଭ କରନ୍ତି ଚଟ୍ଟୋପାଧ୍ୟାୟରୁ । ବଡ଼ କିରାଣି ବସନ୍ତ ବାବୁଙ୍କୁ ପ୍ରଥମ ଦେଖାରେ ପ୍ରଶଂସାର ତେଜରେ ପୋତିଦେବାଠାରୁ ଆରମ୍ଭ-କରି ଉପର ଅଫିସରଙ୍କ ବେମାର ଅବସ୍ଥାରେ ଗୋଡ଼ ଘଷିବା ପର୍ଯ୍ୟନ୍ତ ସବୁ ସେ କରିପାରନ୍ତି ଅକୁଣ୍ଠ ଚିତ୍ତରେ । ଶେଷରେ ରଣଜିତ୍ ଓ ଶର୍ମାଙ୍କୁ ମଧ୍ୟ ସେ 'ହୁକ୍' କରନ୍ତି । ଅବଶ୍ୟ ସେଥିପାଇଁ ନିଜର ସ୍ତ୍ରୀ ସର୍ବେଶ୍ୱରୀଙ୍କୁ 'ଥୋପ' କରିବାକୁ ପଡ଼ନ୍ତି ।

ତୃଙ୍କରଙ୍କ ଜୀବନରେ ପି: ପି: ଆର୍ ହିଁ ପ୍ରଧାନ ଅବଲମ୍ବନ । ସେଇ ବର୍ଦ୍ଧିଷ୍ଣୁ ପି: ପି: ଆର୍ ପାଇଁ ସେ ସବୁ କିଛି ତ୍ୟାଗ କରିପାରେ । ନିଜର ବ୍ୟକ୍ତିତ୍ୱର ଚୁଟିକୁ କାଟି ଅନ୍ୟର ପାଦତଳେ ଥୋଇ ଦେଇପାରେ । ପୁଣି ମାନ, ସମ୍ମାନ, ସହାଗ ଓ ସର୍ବୋପରି ନିଜର ସ୍ତ୍ରୀକୁ ମଧ୍ୟ ଛାଡ଼ିପାରେ । ସବୁ ଯାଉ ପଛକେ, ପଦବୀର ସିଡ଼ିରେ ଗୋଟିଏ ପାହାଚ ସେ ଉଠୁ । ସେଇ କାଳେ ତୃଙ୍କରଆର ସ୍ୱର୍ଗ ।

ଏ ଯୁଗ ପ୍ରତାରଣା ଓ ପ୍ରମାଣର ଯୁଗ, ମଦ ଖାଅ ଦୋଷ ନାହିଁ; କିନ୍ତୁ ମଦ ଦେହରେ ବୋଳି ହୁଅନି । ଯୁକ୍ତିଦ୍ୱାରା ପ୍ରମାଣ କର ତମେ ମଦୁଆ ନୁହଁ । ଏହିପରି ଜୀବନର ନୂଆ ବ୍ୟାକରଣ ମର୍ବେଶ୍ୱରୀ ଶୁଣିଛି ନିତା ମୁହଁରୁ । ଗଉଣୀରେ ମାପି ଟଙ୍କା ଅମଳ କଲେ ବି ପ୍ରତିମାସରେ ଅଫିସ କିରାଣିଠାରୁ ଦଶ କୋଡ଼ିଏ ଟଙ୍କା କରଜ ଆଣିବାକୁ ହିଁ ହେବ । ତା' ନ ହେଲେ ଲୋକେ କାପରି ବୁଝିବେ ଯେ ବଳୀଦତ୍ତ ଦୁର୍ଭିକ୍ଷର ଗ୍ରାସରେ ପଡ଼ିନି ବୋଲି ?

କେହିବି ବ୍ୟକ୍ତି ଯଦି ଘରକୁ ଆସେ କେବେ ବେଳ ହେଉ ବା ଅବେଳ ହେଉ ଜଣାଇବାକୁ ହେବ ସେ କାର୍ଯ୍ୟବ୍ୟସ୍ତ । ସେଥିପାଇଁ ଦରକାର ପ୍ରସ୍ତୁତି ଦୁଆରରୁ ଠିପି ହୋଇଥିବ ଅଲଗା, ନିବ୍‌ରେ ଲାଗିଥିବ ଓଦା କାଳି, ଫାଇଲ୍-ପତ୍ର ଅସ୍ତବ୍ୟସ୍ତ । ଆଉ ନିଜର ବେଶଭୂଷାରେ ମଧ୍ୟ ଇତସ୍ତତ ଭାବର ସୂଚନା, ଯେପରି କାମ ମଝିରୁ ଉଠି ଆସିବାକୁ ହୋଇଛି । ସମୟ ନାହିଁ, ଖୁବ୍ ଅଭାବ, ଖାଲି କାମ, କାମହିଁ ଜୀବନର ସର୍ବସ୍ୱ ।

ଦାନାପାଣିର ଚିତ୍ର ଫଳକରେ ଏଇ ସମାଜର ଦୁଇଟି ସଂପ୍ରଦାୟଙ୍କ ଉଭୁଗ ଚିତ୍ର ପ୍ରତିବିମ୍ବିତ । ଗୋଟିଏ ପକ୍ଷରେ ଶିକ୍ଷିତ, ଅଭିଜାତ, ପ୍ରଗତିଶୀଳ, ରୁଚିସଂପନ୍ନ ସଂପ୍ରଦାୟ ଏବଂ ଅପର ପକ୍ଷରେ ନିର୍ଯ୍ୟାତିତ ଚଳଆ କର୍ମଚାରୀ ଓ ଶ୍ରମିକର ଗୋଷ୍ଠୀ ।

ନୈତିକ ଆଦର୍ଶର ପ୍ରତିଷ୍ଠା ପାଇଁ ଲେଖକ ପ୍ରୟାସୀ ନୁହନ୍ତି । ଏ ଆବର୍ଜନା ଆମ ସମାଜର । ତେଣୁ ନିଜ ନିଆଁକୁ ଅଣ୍ଟିରେ ପୁରାଇ ଲୁଗା ଘୋଡ଼େଇବାକୁ ସେ ଶୃଦ୍ଧାନ୍ତ ନାହାନ୍ତି । ଏ ପ୍ରକାର ସଙ୍କୀର୍ଣ୍ଣତାକୁ ନେଇ ଦାନାପାଣିରେ ସ୍ଥାନ ଦେଇ ନାହାନ୍ତି । ବାସ୍ତବରେ ଓ ପରୋକ୍ଷରେ ଆଦର୍ଶକୁ ବ୍ୟକ୍ତ କରିବାକୁ ପାଇଁ ଦାନାପାଣି ହୋଇଛି ଚରିତ୍ରର ଯାଦୁଘର ।

ଦାନାପାଣି ଚରିତ୍ର ପ୍ରଧାନ ଉପନ୍ୟାସ, ଘଟଣା ପ୍ରଧାନ ନୁହେଁ । ତେଣୁ ଚରିତ୍ରଗୁଡ଼ିକୁ ସ୍ପଷ୍ଟ କରିବା ପାଇଁ ଘଟଣାମାନଙ୍କର ସୃଷ୍ଟି । ଲେଖକ ଚରିତ୍ର ଚିତ୍ରଣରେ ଚରମ ସାଫଲ୍ୟ ଅର୍ଜନ କରିଛନ୍ତି । ନାୟକ ଓ ନାୟିକା ଚରିତ୍ର ଛଡ଼ା ଅନ୍ୟାନ୍ୟ ଗୌଣ ଚରିତ୍ରଗୁଡ଼ିକ ମଧ୍ୟ ନିଜର ବ୍ୟକ୍ତିତ୍ୱରେ ବଳୀୟାନ୍ ଏବଂ ଉପନ୍ୟାସ ଜଗତରେ ଗୋଟିଏ ଗୋଟିଏ ଏକକ ସୃଷ୍ଟି । ନାୟକ ବଳୀଦତ୍ତ ମହୀୟାନ୍ ଓ ଅବିସ୍ମରଣୀୟ ହୋଇ ଉଠିଛି ପାଠକ ପାଖରେ ତା'ର ମହତ୍ ଚରିତ୍ରବତ୍ତା ପାଇଁ ନୁହେଁ, ଲେଖକଙ୍କର ଚିତ୍ରଣ କୌଶଳ ପାଇଁ ।

ଏଇ ପ୍ରସଙ୍ଗରେ ଆମେ ବିଶ୍ୱ ସାହିତ୍ୟ ଜଗତରୁ ଡିକେନ୍‌ସଙ୍କ 'ମିକ୍‌ବାର୍' ଚରିତ୍ର, ଥମାସ୍ ହାର୍ଡ଼ିଙ୍କ 'ହେନ୍‌ଚାର୍ଡ଼୍', ଅଷ୍ଟିନ୍‌ଙ୍କ ଏଲିଜାବେଥ୍ ଓ ଫକୀରମୋହନଙ୍କ ଚମ୍ପାକୁ ସ୍ମରଣ କରିପାରୁ । ଏମାନେ ଗୋଟିଏ ଗୋଟିଏ ସାଧାରଣ ଚରିତ୍ର ହେଲେହେଁ ଶିଳ୍ପ ନୈପୁଣ୍ୟ ଦୃଷ୍ଟିରୁ ଅସାଧାରଣ । ବଳୀଦତ୍ତ ଏହିପରି ଏକ ଅନବଦ୍ୟ ସୃଷ୍ଟି ଯାହାକୁ କି ପାଠକ ଚାହିଁ ମଧ୍ୟ ଚାହିଁ ପାରେନି, ଘୃଣାକଲେ ମଧ୍ୟ ପର ମୂହୂର୍ତ୍ତରେ କରୁଣାର୍ଦ୍ର ହୋଇଉଠେ, ଯେତେବେଳେ "ଅସନା ଚକ୍କୀର ଗନ୍ଧିଲୁଗ ଚେନାଏ ଚେନାଏ ଚୁଟିରେ ଧୂଅ ସଂଗ୍ରହ କରି କରି ସେ ଗୁଳାଉଛି (ପୃ-୧) ଓ ମେମ୍‌ସାହେବଙ୍କୁ ନଚେଇଦେବା ପାଇଁ ଉଦ୍ଗ୍ରୀବ ହୋଇ ଫେରିଛି କମ୍ପା ସାହେବଙ୍କ କୁକୁରର ପାଦକୁ କୋଳରେ ଧରି ଯାଇଛି ସେତେବେଳେ ଘୃଣା ପରିବର୍ତ୍ତେ ମନକୁ ଆସିଛି ତା' ପ୍ରତି ଦୟା । କିନ୍ତୁ ଯେତେବେଳେ ବଡ଼ବାବୁଙ୍କୁ ଅତର ଖାଡ଼ି ଚୁଆ, ଜରିଲଗା ପାନ ଖଣ୍ଡିଏ ଭେଟି ଦେଇ ଏକ୍‌ଷ୍ଟ୍ରା ଓ ବିରୁଦ୍ଧରେ ଚୁଗୁଲି କହୁଛି ସେଠି ବଳୀଦତ୍ତ ପାଇଁ ଘୃଣା ଓ ଅବଜ୍ଞାରେ ମନ ପୂରି ଯାଇଛି । ପୁଣି କେତେବେଳେ ତା' ଦୁଃଖରେ ପାଠକର ପ୍ରାଣ ମଧ୍ୟ ଧକ୍ ଧକ୍ କରିଛି । ଯାହାହେଉ, ବଳୀଦତ୍ତ ଏକ ଅପରିବର୍ତ୍ତନୀୟ (Flat) ଚରିତ୍ର, ତା' ଭାଗ୍ୟରେ ସିନା ପରିବର୍ତ୍ତନ ଘଟିଛି,

କଲୁ ତା' ବ୍ୟକ୍ତିତ୍ୱରେ ନୁହେଁ । ସେଇ ଦୃଷ୍ଟିରୁ ମିଃ ଶର୍ମା, ରଣଜିତ୍‌, ଏକ୍‌ଟ ଗର୍ଓ ମଧ୍ୟ ଫ୍ଲାଟ ଚରିତ୍ର ଗୋଷ୍ଠୀରେ ଅନ୍ତର୍ଭୁକ୍ତ ହୋଇପାରନ୍ତି ।

କଲୁ ସରୋଜିନୀ ? ସରୋଜିନୀର ଚରିତ୍ର ଫ୍ଲାଟ୍ ନା ରାଉଣ୍ଡ୍; କେଉଁ ଶ୍ରେଣୀଯୁ ? ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ତା' ମନରେ କାମନାର ହତାଶିଆ ଝଡ଼ ଉଠିଥିଲେ ହେଁ ଉପନ୍ୟାସର ପ୍ରଥମାଂଶରେ ତା' ଚରିତ୍ର ଥିଲା ଭିନ୍ନ ପ୍ରକାରର । ଅସଂଖ୍ୟ ପିମ୍ପୁଡ଼ିଙ୍କ ଗହଣରୁ ଗୋଟିଏ ଖାଦ୍ୟ କଣିକାକୁ ନିଜ ଆଡ଼କୁ ଟାଣି ଆଣିବା ପାଇଁ ଯୋଜନା କରୁ କରୁ ବଳୀଦତ୍ତ ଯେତେବେଳେ ସୁଖରେ ଶୋଇ ଘୁଙ୍ଗୁଡ଼ି ମାରୁଥାଏ, ଏକା ଯନ୍ତଣାରେ ପଡ଼ିରହି ସରୋଜିନୀ ସେତେବେଳେ ନାଗୁଣୀ ପରି ଧୁଁ ଧୁଁ ନିଶ୍ୱାସ ଛାଡ଼େ । 'ପତି ପରମ ଗୁରୁ'ର ଧାରଣା ସେଇ ଝିହୂଡ଼ି ପାଇଁ ତା' ଠାରୁ ବହୁତ ଦୂରରେ ଥାଏ । କାରଣ ବଳୀଦତ୍ତର ସ୍ୱପ୍ନ, ତା'ର ସ୍ୱପ୍ନ ନୁହେଁ । ତଥାପି ରାତି ପାହେ, ହସି ହସି ଘର କରଣାକୁ ନିଜର କରି ଆଦରି ନିଏ ସେ । ମନକୁ ସାନ୍ତ୍ୱନା ଦିଏ, ଯାହା ହେଲେ ବି ବଳୀଦତ୍ତ ଗୋଟା ସୁଦ୍ଧା ତା'ର, ସେଇ ତା'ର ଐଶ୍ୱର୍ଯ୍ୟ, ସେଇ ତା'ର ସ୍ୱର୍ଗ ।

ବଳୀଦତ୍ତର ଅମଙ୍ଗଳ ଆଶଙ୍କାରେ ଯେଉଁ ସରୋଜିନୀ ନିଠାକୁ କହୁଥିଲା ଆଉ ଗୋଟାଏ ଭଡ଼ାଘର ଖୋଜିବାକୁ ସେଇ ସରୋଜିନୀ ପୁଣି ପ୍ରକାଶ୍ୟରେ ବଳୀଦତ୍ତ ଆଗରେ କରିଛି ଜୀବନର ବ୍ୟାଖ୍ୟା । "ତୁମେ ଆଗ କଥା ନ ଭାବି ଶେଷ କଥା ଭାବୁଛ, ଶୁଣିଛି ଶେଷକଥା ଭାବୁଥିଲେ ମଣିଷ ବାବାଜି ହୁଏ । ଶାସ୍ତ୍ର କହେ ମଣିଷର ଶେଷ ଘାଟ ମଶାଣି ଭୂଇଁରେ, ଯେତେବେଳେ ଏ ଦେହ ଜଳି ପୋଡ଼ିଯାଏ" (ପୃ-୩୧୫) ।

ସେଇ ସରୋଜିନୀ ଯେତେବେଳେ ହାଓ୍ୱାଇ ଦୁନିଆଁରେ ପତନ ହୋଇ ଉଡ଼ୁଛି ସେତେବେଳେ ଚେତନ ମନରେ ଅନୁଭବ କରିଛି "ନିଳକଣ୍ଠ ତା'ର ଦୟା ପାଇବାକୁ ବି ଅଧମ ।" ଶେଷରେ ସରୋଜିନୀ ପହଞ୍ଚିଛି ଆଉ ଏକ ଦୁନିଆଁରେ ଯାହାକି ବଳୀଦତ୍ତଠାରୁ ଦୂରବର୍ତ୍ତୀ, ପରିବର୍ତ୍ତନ ହେତୁ ସରୋଜିନୀ ଚରିତ୍ର ବର୍ତ୍ତୁଳ ।

ଉପନ୍ୟାସଟିରେ ଗୌଣ ଚରିତ୍ରମାନଙ୍କର ବହୁଳତା ଲକ୍ଷ୍ୟ କରାଯାଇ-ଥାଏ । ତଥାପି ଲେଖକଙ୍କର କଳାବୋଧ ଯୋଗୁଁ ସେମାନେ ଅପ୍ରୟୋଜନୀୟ କିମ୍ବା ନିରର୍ଥକ ବୋଧ ହୋଇ ନାହାନ୍ତି, ବରଂ ନାଟ ଏଇ ପୃଥିବୀର ଜନ ସମୁଦ୍ର ମଧ୍ୟରେ ଏମାନେ ଗୋଟିଏ ଗୋଟିଏ ବିନ୍ଦୁ; ଯାହାଙ୍କୁ ନେଇ

ସମୁଦ୍ରର ବିସ୍ତୃତ କଳନା କରି ହୁଏ । ଚରିତମାନେ ବିପୁଳ ହୋଇଥିଲେ ବି ପ୍ରତ୍ୟେକ ସ୍ୱାତନ୍ତ୍ର୍ୟ ମଣ୍ଡିତ । ଏକଧର୍ମୀ ଏକାଧିକ ଚରିତ ଦାନାପାଣିରେ ଖୋଜିଲେ ମିଳେନା । ମାନବ-ଚରିତ୍ର ପୃଥିବୀର ସ୍ୱରୂପ କଳନା କରିବାକୁ କେବଳ ଏମାନଙ୍କର ଅବତାରଣା ନୁହେଁ, ବରଂ ମୁଖ୍ୟ ଚରିତକୁ ସ୍ପଷ୍ଟ କରିବାପାଇଁ ଏମାନେ ସହାୟକ ହୋଇଛନ୍ତି । ଅନ୍ୟ କଥାରେ କହିଲେ, ଗୌଣ ଚରିତମାନଙ୍କ ସାହାଯ୍ୟରେ ମୁଖ୍ୟ ଚରିତମାନେ ଲକ୍ଷ୍ୟ ଦିଗରେ ଆଗେଇବା ପାଇଁ କ୍ଷିପ୍ର ଗତି ଗ୍ରହଣ କରି ପାରିଛନ୍ତି । ଆଲୋଚନା ପାଇଁ ରଣଜିତ୍, ମିଃ ଶର୍ମା, ଏଙ୍କଟେଶ୍ୱରାଓ, ବନ୍ଦୁ, ମିଲି, ନଳି, ରାମବାବୁଙ୍କ ସ୍ତ୍ରୀଙ୍କୁ ନିଆଯାଇ ପାରେ ।

ରଣଜିତ୍ ଓ ମିଃ ଶର୍ମା ଚରିତ ଦୁଇଟିର ଗୁରୁତ୍ୱ ସହଜରେ ଅନୁମେୟ । ଏମାନଙ୍କୁ ପ୍ରତିଦ୍ୱନ୍ଦ୍ୱୀ ନାୟକ କହିଲେ କିଛି ଅବାନ୍ତର ହେବନି । ରଣଜିତ୍‌ହିଁ ପ୍ରଥମେ ବଳିଦତ୍ତ ଆଖିରେ ଝଲକ ଲଗାଇଛି, ସେ ବଳିଦତ୍ତ ଦୃଷ୍ଟିରେ ଆଦର୍ଶ ଓ ଅନୁକରଣୀୟ, କିନ୍ତୁ ନିର୍ବୋଧ ବଳିଦତ୍ତ ଖିଆଲରେ ଭାସି ଯାଇଁ ଅନୁକରଣ କରିଛି ତା'ର ବାହ୍ୟ ସ୍ୱରୂପକୁ; କିନ୍ତୁ ରଣଜିତର ଅନ୍ତଃରୂପକୁ ନୁହେଁ । ରଣଜିତର ସ୍ତ୍ରୀ 'ବନ୍ଦୁ' ଯାହା ପାରିନାହିଁ, ସରୋଜିନୀ ପାରିଛି । 'ବନ୍ଦୁ' ସଙ୍ଗଠନ ପାଇଁ ମିଃ ଶର୍ମାଙ୍କ ଗୋଡ଼ରେ ଯାଇପାରିନି, ସରୋଜିନୀ କିନ୍ତୁ ଯାଇପାରିଛି ।

ରଣଜିତ୍‌ହିଁ ଆଣିଛି ବଳିଦତ୍ତ ଜୀବନରେ ପ୍ରଥମ ଟ୍ରାଜେଡ଼ି । କାରଣ ସର୍ବୋଚ୍ଚ ଆସନର ଅଧିକାରୀ ବଳିଦତ୍ତ ସମ୍ବର୍ଦ୍ଧନା ସଭାରେ ଅଭିନନ୍ଦିତ ହୋଇ ଯେତେବେଳେ ଫେରି ଆସିଛି ତା' ଘରକୁ ସେତେବେଳେ ହର୍ଷାଠାରୁ ପାଇଛି ସରୋଜିନୀର ରଣଜିତ୍ ବାବୁଙ୍କ ସାଙ୍ଗରେ ଯିବା ସମ୍ବାଦ । ସେଇ ତା'ର ଜୀବନର ପ୍ରଧାନ ଟ୍ରାଜେଡ଼ି ଘଟଣା ।

ସରୋଜିନୀ ହାତରେ ଯେତେ ଅପମାନିତ ହେଲେ ବି ତା' ପିଠିରେ ଡେଣା ଲାଗିଛି ମିଃ ଶର୍ମାଙ୍କ ଯୋଗୁଁ; ଏବଂ ବଳିଦତ୍ତର ପ୍ରାଣଟା ସମୟେ ସମୟେ କମ୍ପାନୀର କଳପରି ଧକ୍ ଧକ୍ କରୁଥିଲେ ବି ତାହା ସରୋଜିନୀକୁ ଉଦ୍‌ଭ୍ରାନ୍ତ କରିଛି ସିନା; କିନ୍ତୁ ମିଃ ଶର୍ମାଙ୍କ ହାତରେ ବୁଲିଯିବାରୁ କେବେହେଲେ ନିବର୍ତ୍ତାଇ ନାହିଁ । ମିଃ ଶର୍ମାଙ୍କ ଚରିତ୍ରଟି ନଥିଲେ ହୁଏତ ଦାନାପାଣିର ରୂପରେଖ ଭିନ୍ନ ପ୍ରକାରର ହୋଇ ଥା'ନ୍ତା ।

ଏଙ୍କଟ୍‌ରାଓ, ବଳୀଦତ୍ତର ଅନ୍ତରଙ୍ଗ ବନ୍ଧୁ । ଏଙ୍କଟ୍‌ରାଓ ପ୍ରତି ବଳୀଦତ୍ତର ଥିଲା ଗଭୀର ସମ୍ମାନ, କାରଣ ବଳୀଦତ୍ତ ତା'ଠାରେ ଦେଖିଥିଲା ଗୋଟାଏ ପରଂପରାର ସମ୍ଭ୍ରାନ୍ତ ଆଦର୍ଶ । କିନ୍ତୁ ଭାଗ୍ୟର ଗତି ଭିନ୍ନ । ଯିଏ ତା'ର ଆଦ୍ୟଗୁରୁ, ତାରିପିଠିରେ ପାଦରଖି ବଳୀଦତ୍ତ ଚଢ଼ିଯାଇଛି ଉପର ପାହାଚକୁ । କେବଳ ସେତିକି ନୁହେଁ, ଯେଉଁ ବଳୀଦତ୍ତ ଏଙ୍କଟ୍‌ରାଓ ପାଖକୁ ବାରମ୍ବାର ଧାଉଁଥିଲା ହାତ ଦେଖାଇ ଭାଗ୍ୟ ଗଣନା କରିବାପାଇଁ, ସେଇ ବଳୀଦତ୍ତ ପୁଣି ଏଙ୍କଟ୍‌ରାଓ ହାତ ଦେଖିବାକୁ ଇଚ୍ଛା କରୁଥିଲେ ମଧ୍ୟ ତା'ଠାରୁ ଦୂରେଇ ରହୁଛି । କାରଣ ସେତେବେଳକୁ ସେ ସର୍ବୋଚ୍ଚ ପଦବୀରେ ଭୂଷିତ ଓ ଏଙ୍କଟ୍‌ରାଓର ବଡ଼ ଅଫିସର । ବଳୀଦତ୍ତର ଧାରଣା, ଏପରି ନକଲେ ସାହେବୀ ମନୋବୃତ୍ତି ନାହିଁ ବୋଲି ଲୋକେ ଭାବିବେ ଏବଂ କମ୍ପାନୀ କାମରେ ଅବହେଳା ସୃଷ୍ଟି ହେବ ।

ଏହି ହୀନକମି ମନୋବୃତ୍ତି ହିଁ ଆମ ଜାତୀୟ ଚରିତ୍ରର ଅଧଃପତନର ମୁଖ୍ୟ କାରଣ । ବଳୀଦତ୍ତ ମନରେ ଏପରି ଭାବନା ସୃଷ୍ଟି କରି ଲେଖକ ବଳୀଦତ୍ତ ମାଧ୍ୟମରେ ପ୍ରଶାସକ ଗୋଷ୍ଠୀଙ୍କ ଅନ୍ତରୂପକୁ ବ୍ୟଙ୍ଗ କରିଛନ୍ତି । ଜାତି ଓ ଜୀବନର ମାନବତା ବୋଧ କିପରି ଏହାଦ୍ୱାରା ନିମ୍ନଗାମୀ ହେଉଛି ତାହା ସୂଚାଇଛନ୍ତି ।

ଏଙ୍କଟ୍‌ରାଓ ଚରିତ୍ରଟିକୁ ଟିକିଏ ତନେଇ ଦେଖିଲେ ସନ୍ଦେହ ହୁଏ, ନିଜେ ଲେଖକ ଏ ଚରିତ୍ର ମଧ୍ୟରେ ଆତ୍ମ ପ୍ରକାଶ କରି ନାହାନ୍ତି ତ ? ଯେଉଁ ଏଙ୍କଟ୍‌ରାଓ 'ପ୍ରେମ ସାର୍'ର ମୂର୍ତ୍ତିମନ୍ତ ପ୍ରକାଶ, ଯିଏ ଅପ୍ରିୟ ସତ୍ୟ କୁହେ ନାହିଁ କି, କାହାର ମନରେ ଦୁଃଖ ଦିଏ ନାହିଁ, କୌଣସି ସହକର୍ମୀ ଉପରେ ଅଫିସରଙ୍କ କ୍ରୋଧ ଝଡ଼ ବହିଗଲେ ଅଫିସରଙ୍କୁ ଖୁସି କରିବାକୁ ଯିଏ ଦସ କଲ୍ଲୋଳରେ ଝାସ ଦିଏ ନାହିଁ ବରଂ ସମସ୍ତେ ହସୁଥିବା ବେଳେ ମିଛ ପାନିରେ ରୁମାଲ ଦେଇ ନିର୍ବିକାର ଭାବରେ କାମ କରିଯାଏ, ସେଇ ଏଙ୍କଟ୍‌ରାଓ ଚରିତ୍ରରେ ଲେଖକଙ୍କର ନିଜ ପ୍ରାଣରେ ବାସ୍ତବ ଅନୁଭବ ଆତ୍ମ ପ୍ରକାଶ କରିଥିବା ମନେହୁଏ ।

ଉପନ୍ୟାସରେ 'ବନ୍ଦୁ' ଚରିତ୍ରଟି ଖୁବ୍ କମ୍ ଥର ପାଇଁ ଦେଖାଦେଇଥିଲେ ହେଁ ବଳୀଦତ୍ତ ଚରିତ୍ରର ବିକାଶ ପାଇଁ ଓ ତା' ଜୀବନର ବିଷାଦମୟ ପରିଣତି ପାଇଁ ବହୁଳାଂଶରେ ସେହି ଦାୟୀ, ବିଶେଷ 'ନାହିଁ' ବାକ୍ୟରେ ଧାଇଁ ମଧ୍ୟ ବନ୍ଦୁର ବିମଳହାସ ବଳୀଦତ୍ତ ମନରେ ଅହେତୁକ ଈର୍ଷା, ତେଣୁ ମନେ ମନେ ଆରମ୍ଭ କରିଛି ତା' ସହିତ ପ୍ରତିଯୋଗିତା । କିନ୍ତୁ ଅର୍ଥ, କ୍ଷମତା, ପ୍ରତିପତ୍ତି

ଯାଇ ମଧ୍ୟ ବଳଦେଭ ପରାଜିତ । କାରଣ ତା'ଠାରୁ ଅଧିକ ପ୍ରତିଷ୍ଠା ଅର୍ଜନ କରିଛି ବନ୍ଦୁ ।

ନାରୀ ଚରିତ୍ରମାନଙ୍କ ମଧ୍ୟରୁ ମିଳି, ନଳି ଓ ରମବାବୁଙ୍କ ସ୍ତ୍ରୀ ସରୋଜିନୀର ପରିବର୍ତ୍ତନ ପାଇଁ ବହୁ ଭାବରେ ଦାୟୀ । ରମବାବୁଙ୍କ ସ୍ତ୍ରୀ ସ୍ବରୂପ ନଅ ଇଞ୍ଚ କାହାଣୀ ବଳଦେଭର ରୂପ, ଭେକ, ରୁଚି ଓ ଦାରିଦ୍ର୍ୟକୁ ବାରଂବାର ଖୋଷ୍ଟା ଦେଇ ସରୋଜିନୀର ଅତୃପ୍ତ ମାନସକୁ ଚିଆଁଇ ଦେଇଛନ୍ତି । ତା' ପରେ ଅନୁକୂଳ ପରିବେଶ ପାଇ ସେ ଅଙ୍କୁରର ଉଦ୍‌ଗମ ହୋଇଛି । ସେଇ ବିକାଶ ପାଇଁ ଯେଉଁମାନେ ସାହାଯ୍ୟ କରିଛନ୍ତି ସେମାନଙ୍କ ମଧ୍ୟରେ ମିଳି ଓ ନଳି ପ୍ରଧାନ । କିନ୍ତୁ ଦୁଃଖର ବିଷୟ ସେମାନେ ସରୋଜିନୀକୁ କେବଳ ଗଛ ଉପରକୁ ଉଠିବାର ଉପାୟଟି ଶିଖାଇ ଦେଇଛନ୍ତି, ଓହ୍ଲାଇବାର କଳା ନୁହେଁ । ହେ ବନ୍ଧୁ, ବିଦାୟ କହି ସମସ୍ତ ତା'ଠାରୁ ପୃଥକ ହୋଇ ଯାଇଛନ୍ତି । ଶେଷରେ ଚଢିରହିଛି ଏକା ସରୋଜିନୀ ତା'ର ଛିଣ୍ଡା ବ୍ୟକ୍ତିତ୍ଵକୁ ନେଇ ।

କେବଳ ଏତିକି ନୁହେଁ ଏହିପରି ହର୍ଷା, ନଟା, ମହାପାତ୍ର ବାବୁଙ୍କ ସ୍ତ୍ରୀ ଇତ୍ୟାଦି ପ୍ରତ୍ୟେକ ଗୌଣ ଚରିତ୍ର କିଛି ନା କିଛି ଉଦ୍ଦେଶ୍ୟ ନେଇ ଆବିର୍ଭୂତ । ଦାନାପାଣିର ଚରିତ୍ରମାନଙ୍କୁ ଆଲୋଚନା କଲା ବେଳେ ଗୋଟିଏ କଥା ଦୃଷ୍ଟିକୁ ଆସେ, ଚରିତ୍ରମାନେ ସୁବିକଶିତ ହୋଇଥିଲେ ହେଁ ସ୍ଵବିକଶିତ ନୁହନ୍ତି । ଲେଖକଙ୍କର ଅବଲମ୍ବନ ବିନା ସେମାନଙ୍କର ଅଗ୍ରଗତି କରିବାର କ୍ଷମତା ନାହିଁ । ଔପନ୍ୟାସିକ ନିଜେ ଚରିତ୍ରମାନଙ୍କ ମଧ୍ୟରେ ଜଣେ ମୁଖ୍ୟ ଚରିତ୍ର ହୋଇ ଉଠିଛନ୍ତି । ଏଇ ସାମାନ୍ୟ ତ୍ରୁଟୀ ଟିକକ ନ ଥିଲେ ଚରିତ୍ରମାନଙ୍କ ମୁଖରେ ସଂଳାପ ଦେଇ ସେମାନଙ୍କୁ ନିଜେ ନିଜେ ବିକଶିତ ହେବାର ସୁଯୋଗ ଯଦି ଦିଆଯାଇ ଥାନ୍ତା ତେବେ ଦାନାପାଣି ସଫଳତାର ଚରମ ସୀମାକୁ ସ୍ପର୍ଶ କରିପାରିଥାନ୍ତା ।

ପୂର୍ବରୁ କୁହାଯାଇଛି ଦାନାପାଣି, ଘଟଣା ପ୍ରଧାନ ନୁହେଁ; ଚରିତ୍ର ପ୍ରଧାନ ଉପନ୍ୟାସ । ତେଣୁ ଚରିତ୍ରମାନଙ୍କର ବିକାଶ ପାଇଁ ଘଟଣାର ସୃଷ୍ଟି ହୋଇଛି । ଏଇ ଘଟଣାମାନେ ଗଳ୍ପଟିର ସହିତ ଐକ୍ୟ ଓ ଛନ୍ଦ ରକ୍ଷାକରି ଅଗ୍ରଗତି କରିଛନ୍ତି କି ନାହିଁ ବିଚାର କରି ଦେଖିବା ଉଚିତ । କାରଣ ଘଟଣାମାନଙ୍କର ଶିଥିଳ କିମ୍ବା ଯାନ୍ତ୍ରିକ ସଂଯୋଜନା ଉଭୟଟି ପାଠକକୁ ଆନନ୍ଦ ଦେବାରେ ସମାନ ଭାବରେ ଅକ୍ଷମ । ଘଟଣାର ଶିଥିଳ ସଂଯୋଜନା ହେତୁ 'ଦାନାପାଣି'ର

ପ୍ରଥମାର୍ଦ୍ଧର ଗତି ମନ୍ଥର ହୋଇଥିବା କେତେକେ ଅଭିଯୋଗ କରନ୍ତି । ହୁଏତ ତାହା କେତେକାଂଶରେ ସତ, କିନ୍ତୁ ତାହା ତ୍ରୁଟିଯୁକ୍ତ ନ ହୋଇ ବରଂ ଔଚିତ୍ୟ ଓ ଯଥାର୍ଥ୍ୟ ରକ୍ଷା କରିଛି । କାରଣ ଟାଙ୍ଗରା ମାଟିରେ ଫୁଲ ଫୁଟିବା ପାଇଁ ସୁନ୍ଦର ବା ଯୋଗ୍ୟ ଭୂଇଁର ଖତ ଦେଲେ ବି ଯେପରି ସମୟ ଦରକାର, ଭୂଇଁଫୁଟ ନଅଇଞ୍ଚ ଜଳ, ମରୁଭୂମି ଟଙ୍କିଆ କରାଣୀ ବଳୀଦତ୍ତର ବୁକସିରେ ଉନ୍ନତି ସେହିପରି ସମୟ ସାପେକ୍ଷ । ସେଥିପାଇଁ ଦରକାର ପ୍ରସ୍ତୁତି, ନେହି କ୍ଷେତ୍ର ପ୍ରସ୍ତୁତି ହେତୁ 'ଦାନାପାଣି'ର ପ୍ରଥମାର୍ଦ୍ଧ ସାମାନ୍ୟ ମନ୍ଥର ହୋଇ ଥାଇପାରେ । ଉଚ୍ଚରେ ଥରେ କଷି ଲାଗିଲେ ଫଳ ଅଜାଡ଼ି ହୋଇଗଲା-ପରି ବଳୀଦତ୍ତ ପ୍ରଥମ ପାହାଚ ଉଠିଲାପରେ ଆଉ ଅଧବାଟରେ ଅଟକି ରହିନାହିଁ । କ୍ଷିପ୍ର ଗତିରେ ସୋପାନ ଚଢ଼ି ଖୁବ ଶୀଘ୍ର ତା' ଲକ୍ଷ୍ୟରେ ପହଞ୍ଚି ପାରିଛି । ତେଣୁକରି 'ଦାନାପାଣି'ର ଦ୍ୱିତୀୟାର୍ଦ୍ଧ ପ୍ରଥମାର୍ଦ୍ଧଠାରୁ ଅଧିକ ଗତିଶୀଳ ।

ଦାନାପାଣିର ଶ୍ରେଷ୍ଠ କଥା ଯେ କୌଣସି ଘଟଣା ପ୍ରତି ଦୃଷ୍ଟିପାତ କଲେ ଜଣାପଡ଼େ ପ୍ରତ୍ୟେକଟି ମୂଳ ଗଳ୍ପ ସହ ସଂପୃକ୍ତ । ପ୍ରତ୍ୟେକ ଘଟଣା କଳ୍ପିତ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ଏକମୁଖୀନତା ରକ୍ଷା କରିଛନ୍ତି । ସାହେବ ଘୋଡ଼ା ଉପରୁ ପଡ଼ିଯିବାରୁ ଜାଣି ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଜୋତାରେ ଫିତା ବା ପ୍ୟାଣ୍ଟରେ ବୋତାମ ନ ଦେଇ କର୍କିପରି ଉଡ଼ିଯିବା କଥା ସଧା ହୋଇଥିଲେ ହେଁ ମେମ୍‌କୁ 'ଗୁଡ୍ ମର୍ଣ୍ଣିଂ' କହିବା ଓ ମିଃ ଶର୍ମାଙ୍କ ସହିତ ପ୍ରଥମ ସାକ୍ଷାତକାରରେ 'ସିଟ୍ ଡାଉନ୍' କହିବା ମାତ୍ରେ ଖୋଲା ଚଟାଣ ଉପରେ ବସି ପଡ଼ିବା ଘଟଣାରେ ବଳୀଦତ୍ତ ବ୍ୟକ୍ତିତ୍ୱର ଗଭୀରତା ମାପିହୁଏ ।

ପ୍ରଥମ ପ୍ରମୋଶନ ପରେ ଉତ୍‌ଫୁଲ୍ଲ ବଳୀଦତ୍ତ ଘରକୁ ଫେରି ଶୁଣିଛି କଲେଜ ଗୁଣ୍ଡର ବଂଶୀ ସ୍ୱର । ଆଜି ଏପଟ ଝରକାରେ ସରୋଜନୀ ବସିଛି ତାକୁଇ ଚାହିଁ । ଏଇ ସାଧାରଣ ଘଟଣାଟି ସୃଷ୍ଟି କରିଛି ବଳୀଦତ୍ତ ମନରେ ଝଡ଼ । ସେଇ ଝଡ଼ ଜଣାଇ ଦିଏ ବଳୀଦତ୍ତ ବୋକା ନୁହେଁ । ସରୋଜନୀର ଅନ୍ୟମନସ୍କତାରେ ବଳୀଦତ୍ତର ପୁରୁଷକାର ଟଙ୍କାରକର ଉଠିଛି । କିନ୍ତୁ ସରୋଜନୀ ଯେତେବେଳେ ରଞ୍ଜନ ବା ମିଃ ଶର୍ମାଙ୍କ ସହିତ ଗାଡ଼ିରେ ବୁଲି ଯାଇଛି ସେତେବେଳେ ବଳୀଦତ୍ତ ଜାଣି ଜାଣି ଉଦାସୀନ ରହିଛି । ଯେ ହେତୁ ଶର୍ମା ଉପରକ ଓ ରଞ୍ଜନର ଉପରକମାନଙ୍କ ସହିତ ସମ୍ବନ୍ଧ ଭଲ । ସେହିପରି

ମହାପାତ୍ର ବାବୁଙ୍କର ବଳୀଦତ୍ତ ଘରକୁ ଦୁଇଥର ଆସିବାର ଘଟଣାରେ ସରୋଜବାଲାର ବ୍ୟକ୍ତିତ୍ୱ କେଉଁ ଅଜଣା ସ୍ଥାନ 'ଗୋପ'ରେ ଉନ୍ମେଷ ହୋଇ ଉଠିଛି । ଗୋପର ଠିକ ଅଙ୍କୁରଟି ପରେ ଜାପୁ ବସ୍ତାର କଷ୍ଟ ଫଳ ଧାରଣ କରିଛି ଭଣଜାତ ଓ ଶର୍ମାଙ୍କ ସାହାଯ୍ୟରେ ।

ଦାନାପାଣିରେ ମୁଖ୍ୟତଃ ଦୁଇଟି ଘଟଣା ଶର୍ମାର ମୃତ୍ୟୁ ଓ ସରୋଜବାଲାର ଘରଗ୍ରାଉ ପୁଣି ବୁଲିପିବା ସାହିତ୍ୟିକ ଗୁରୁତ୍ୱ ଲାଭ କରିଛି । ପ୍ରଥମଟିର ଗୁରୁତ୍ୱ ସହଜରେ ଅନୁମେୟ । ଶର୍ମାର ମୃତ୍ୟୁ ନ ହୋଇଥିଲେ ବଳୀଦତ୍ତର ହୁଏତ ଡଭଲପ ଅଫିସର ହେବାର ସୁଯୋଗ ଜୀବନରେ ଆସି ନଥାନ୍ତା । ତା' ଛଡ଼ା ଶର୍ମାପଣ ହେବାର ପିପାସା ବୃତ୍ତି ମୂଳରେ ଥିଲା ସରୋଜବାଲା । ସରୋଜବାଲା କହିଥିଲା—"ମିଃ ଶର୍ମାଙ୍କ ଗାଡ଼ିପରି ବଡ଼ଗାଡ଼ି ପଛା କଲେତ ଦେବେ ସିନା ! ...ଗାଡ଼ି ସେମିତି ମଟର କିଣି ?

ବଳୀଦତ୍ତ ପାଇଲା, ଶର୍ମାଙ୍କ ଗାଡ଼ିପରି ନୁହେଁ, ଶର୍ମାଙ୍କର ସେଇ ଗାଡ଼ିକୁ । ଖାଲି ଗାଡ଼ି କିଣିଲା ନାହିଁ, ଶର୍ମାଙ୍କ ପଦବୀରେ ବସିବାର କ୍ଷମତା ପାଇଲା । କିନ୍ତୁ ସବୁ ପାଇ ମଧ୍ୟ କିଛି ପାଇନାହିଁ ବଳୀଦତ୍ତ । ଦ୍ୱିତୀୟ ଘଟଣାଟି ହିଁ ତା' ଜୀବନକୁ ବିଷାଦର କୁହେଳିରେ ଆଚ୍ଛନ୍ନ କରିଛି ଓ ତାହାହିଁ ହେଉଛି ଉପନ୍ୟାସର ଚରମ ଆବେଗ (Climax) ଲେଖକ । ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ ଚରମ ଆବେଗକୁ ଉପନ୍ୟାସର ଚରମ ସୀମାରେ ରଖି ପରିସମାପ୍ତିଟିକୁ ଆହୁରି ମର୍ଯ୍ୟାଦାବନ୍ତ କରିପାରିଛନ୍ତି ।

ଦାନାପାଣିର ସାମଗ୍ରିକ ଗଠନ କଳାର ବିଚାର କଲାବେଳେ ଆଉ ଗୋଟିଏ ବିଷୟ ପାଠକର ଦୃଷ୍ଟି ଆକର୍ଷଣ କରେ । ତା' ହେଉଛି 'ଦାନା-ପାଣି'ର Tragic end ବା ବିଷାଦାତ୍ମକ ପରିଣତି । ସେକ୍‌ସପିୟର ଯୁଗରେ ଟ୍ରାଜେଡିର ଅର୍ଥ ଥିଲା ବ୍ୟକ୍ତିର ମୃତ୍ୟୁ । କିନ୍ତୁ କ୍ରମେ ଏହା ବ୍ୟକ୍ତିର ମୃତ୍ୟୁକୁ ନ ବୁଝାଇ ବ୍ୟକ୍ତିର ସାମାନ୍ୟ ଭୁଲ୍, ଦୁର୍ବଳତା ଓ ପତନକୁ ହିଁ ବୁଝାଇଲା । ଏକ କଥାରେ କହିଲେ Tragedyର ଅର୍ଥ ବ୍ୟକ୍ତିର ମୃତ୍ୟୁ ନୁହେଁ, ବ୍ୟକ୍ତିତ୍ୱର ମୃତ୍ୟୁ । ତେଣୁ Tragedyକୁ ବିୟୋଗାନ୍ତକ ନ କହି ବିଷାଦାତ୍ମକ କହିବା ହିଁ ଅଧିକ ସମୀଚୀନ ଏବଂ ଏହି Tragedy ବ୍ୟାଖ୍ୟା ବା ଅଦୃଷ୍ଟହୀନତା ନ ଘଟି ଯଦି ନିଜେ ଚରିତ୍ର ସେଥିପାଇଁ ଦାୟୀ ହୋଇଥାଏ ତେବେ ତାହା ହୁଏ ବେଶୀ ହୃଦୟସ୍ପର୍ଶୀ ।

ସେ ଦୃଷ୍ଟିରୁ ବିଚାର କଲେ 'ବଳୀଦତ୍ତ'ର ବିଷାଦାତ୍ମକ ପରିଣତି ପାଇଁ ନିଜେ ବଳୀଦତ୍ତ ହିଁ ଦାୟୀ । ଯାହାକୁ କୁହାଯାଏ "ଆପଣା ହସ୍ତେ ଜଙ୍ଘା ଛେଦ…।" କାରଣ ମାଙ୍କଡ଼କୁ ଗଛ ଚଢ଼ା ଶିଖାଇଲାପରି ବଳୀଦତ୍ତ ହିଁ ସରୋଜିନୀର ହାତଧରି ଅନ୍ୟ ବାଟରେ ଛାଡ଼ି ଦେଇଛି । ଅମଡ଼ା ମାଡ଼ିବାର ଯଥେଷ୍ଟ ସାହସ ତା'ର ନାହିଁ, ତେଣୁ ସରୋଜିନୀ ତୁଏତ ବିରୋଧ କରିନି । କିନ୍ତୁ ବଳୀଦତ୍ତ ଏକ ପ୍ରକାର ଚାପ ପକାଇଛି ସରୋଜିନୀକୁ ସେପରି ହେବାପାଇଁ । ତା'ପରେ ଭେଳକି ଲାଗିଲା ପରି ସବୁ ବଦଳି ଯାଇଛି । ବଳୀଦତ୍ତ ଚାହିଁଥାଏ । ସରୋଜିନୀ ଚାଲିଯାଏ ମଞ୍ଚରେ । ସେତେବେଳକୁ 'ନେଡ଼ଗୁଡ଼ କଣ୍ଢଣୀକୁ ବନ୍ଧାଯାଇଥାଏ', ଯେଉଁଠିକୁ କିଏ ପାଏନି । ତେଣୁ ବଳୀଦତ୍ତ ଜୀବନର ବିଷାଦାତ୍ମକ ପରିଣତି ପାଇଁ ସରୋଜିନୀ ଦାୟୀ ନୁହଁନ୍ତି, ନିଜେ ବଳୀଦତ୍ତ ହିଁ ତା'ର କାରଣ ।

ତେବେ ପ୍ରଶ୍ନ ଉଠେ, ବଳୀଦତ୍ତର ଜୀବନ ଦୁଃଖମୟ ହେଲା କାହିଁକି ? ଯିଏ ଯାହା ପାଇବା ପାଇଁ ଏକାନ୍ତ ଓ ଏକନିଷ୍ଠ କାମନା କରି ମଧ୍ୟ ପାଇ ପାରେନି ସେହି ହିଁ ତା' ପାଇଁ ହୁଏ ଚରମ ଦୁଃଖଦାୟକ । ବଳୀଦତ୍ତ ଚାହିଁଥିଲା ଐଶ୍ୱର୍ଯ୍ୟ, ପ୍ରତିପତ୍ତି ଓ ପଦୋନ୍ନତି । ସେତକ ସେ ପାଇଛି । ବରଂ ପଦୋନ୍ନତି ପାଇଁ ହୀନପଥ ଅବଲମ୍ବନ କରି ମାନବିକତାରୁ ଓହରି ଯାଇଁ ଯଦି ସେ ତା'ର ଇପ୍‌ସିତ ବସ୍ତୁ ପାଇ ନ ଥା'ନ୍ତା ତେବେ ତା' ଜୀବନ ଆହୁରି ବିଷାଦ-ମୟ ହୋଇଥା'ନ୍ତା । ଦ୍ୱିତୀୟ କଥା—ସରୋଜିନୀକୁ ନେଇ ଗୋଟିଏ ପୂର୍ଣ୍ଣାଙ୍ଗ, ସରସ, ରଙ୍ଗିନ ଜୀବନ ଯାପନ କରିବାର ପରିକଳ୍ପନା ସେ ତ କେବେ କରିନି । ବରଂ ସେ ଐଶ୍ୱର୍ଯ୍ୟ କାମନା କରି ସରୋଜିନୀକୁ କହିଛି— "ଏତେବାଟ ଆସିଗଲିଣି, ପୁଣି ଲୋକକଥା ଶୁଣୁଚ । ମଟର ଗାଡ଼ି, ଖଞ୍ଜା କୋଠା, ଜମିବାଡ଼ି, କିଛି ନାହିଁ, ତୁମର ଅଭାବ ରହିବ ନାହିଁ । ଦୁନିଆଁ ମତେ ଦୋଷ ଦେବ ନାହିଁ । ମୋର୍ କର୍ତ୍ତବ୍ୟ ମୁଁ କରିଛି"—(ପୃ. ୩୧୪) । ସରୋଜିନୀର ଲଗାମହୀନ ମନ ଦେଖି ମନେମନେ ଚକିତ ହୋଇଥିଲେ ମଧ୍ୟ ପରମୁହୂର୍ତ୍ତରେ ବୃହତ୍ତର ଆନନ୍ଦ ଆଶାରେ ସେ ତାକୁ ଖୁସିରେ ଗ୍ରହଣ କରି ନେଇଛି । ତୃତୀୟ କଥା—ଆଗାମୀ ବଂଶଧରର ଅଭାବ କେତେବେଳେ କେମିତି ତା'ମନକୁ ଆସିଚି, କିନ୍ତୁ ସେ ଅଭାବ ମଧ୍ୟ ତା'ର ପୂରଣ ହୋଇଛି । ତା'ର ସୃଷ୍ଟି ଅବୈଧ ହୋଇପାରେ, କିନ୍ତୁ ଅବୋଧ ଶିଶୁପରି ତାକୁ ଅତି

ସାତ୍ତ୍ୱିକ ଭାବରେ ଗ୍ରହଣ କରିଛନ୍ତି ବଳୀଦତ୍ତ । ଉଚ୍ଚମୂଲ୍ୟ ଓ ଆତ୍ମଦୟା ହୋଇଛନ୍ତି ସେ ।

କିନ୍ତୁ ସବୁ ପାଇ ମଧ୍ୟ ବଳୀଦତ୍ତ ଦୁଃଖି, କାରଣ ନ ପାଇବା ଓ ପାଇକରି କିଛି ହରାଇବା ଏକ କଥା ନୁହେଁ । ସେ ପାଇଛନ୍ତି ଗୋଟାଏ ଏବଂ ହରାଇଛନ୍ତି ସେଥିପରି ଆଉ କିଛି । ପ୍ରଥମ ଜୀବନରୁ ସେ ପଦ-ସମ୍ମାନ ବିଷୟରେ ସଚେତନ ; ଘଣ୍ଟା ଘଣ୍ଟା ଧରି ଗୋଡ଼ଭାଙ୍ଗି ଠିଆ ହେଲେବି ମହାପାତ୍ର ବାବୁ ଯଦି ମୁହଁ ଫେରାଇ ନ ଚାହାନ୍ତି ତେବେ ବଳୀଦତ୍ତ ଦୁଃଖ କରନ୍ତି । ବରଂ ଉଚ୍ଚ ଅଫିସରଙ୍କର ଏପରି ଆଦବ କାଇଦାକୁ ଆଦର୍ଶ ଭାବି ଖୁସିରେ ଗ୍ରହଣ କରନ୍ତି । ସେଇଥିପାଇଁ ତ ଏକ୍‌ଟ୍ରା ସମ୍ବର୍ଦ୍ଧନା ସଭାପରେ ଖୁସି ଗପ କରିବାକୁ ଇଚ୍ଛା କରୁଥିଲେ ହେଁ ସେ ନିଜକୁ ଦୂରେଇ ରଖିଥିଲେ । ଯେଉଁ ବଳୀଦତ୍ତ ଚାକିରିଆ କର୍ମଚାରୀ ସହିତ କଥାବାର୍ତ୍ତା ହେଲେ ନିଜକୁ ଅପମାନିତ ମନେ କରୁଥିଲେ, ପାନ ଦୋକାନରେ ଗାଞ୍ଜ ସିଗାରେଟ୍ ଅଥବା ଠିଆ ହେଲେ ଯିଏ ଭାବେ ଆତ୍ମମର୍ଯ୍ୟାଦାରୁ ବେଶୀଭାଗ ବିକଗଲେଣି ବୋଲି, ସେହି ବଳୀଦତ୍ତର ସ୍ତ୍ରୀ ସରୋଜମା ଶେଷରେ ବୁଲି ଯାଇଛନ୍ତି ଚାକିରିଆ କର୍ମଚାରୀ ରଞ୍ଜିତ ସହିତ । ଏହାଠାରୁ ଆଉ ଅଧିକ ଅପମାନ କ'ଣ ଥାଇପାରେ ବଳୀଦତ୍ତ ପାଇଁ ?

ନିଜକୁ ଆଦର୍ଶ ଭାବରେ ବନ୍ଧୁ ପାଖରେ ଦୃଷ୍ଟାନ୍ତ ଦେବାର ପିପାସା ମଧ୍ୟ ତା'ର ପୂରଣ ହୋଇପାରିଲା ନାହିଁ । ସବୁ ତ୍ୟାଗକରି ମଧ୍ୟ ତା'ର ଅନୁଭବ ହେଲା ସେ ଦୁଃଖୀ, ଅଭାଗୁଲିଆ, କିନ୍ତୁ ଅଫିସରେ ମାଉଁଗୋଳ କରି ଗୃହକର୍ମ ଗୁଡ଼ ମଧ୍ୟ ବନ୍ଧୁ ହେଁ ଇନ୍ଦ୍ରି ସମ୍ମାନିତ । ଏ ଦୁଇଟି ଦୁଃଖରେ ବଳୀଦତ୍ତ ଦଗ୍ଧୀଭୂତ । ସେ ବଞ୍ଚି ମଧ୍ୟ ମରିଛନ୍ତି । ମରିଛନ୍ତି ଇନ୍‌କ୍ଳିନି, ଛାତରେ ହାତରଖି ନୁହେଁ, ମୃତ୍ୟୁ ବିଷବଟିକା ଖାଇ ତିଳ ତିଳ କରି ଆତ୍ମାକୁ ହତ୍ୟାକଲା ପରି ।

'Tragedyର ପ୍ରକୃତ ରସ 'କରୁଣ' ହେଲେହେଁ ପାଠକଙ୍କୁ ଏହା ଶ୍ରେଷ୍ଠ ସୁଖ ଦେଇଥାଏ । Abercrombie କହନ୍ତି—"Tragedy satisfies us even in the moment of distressing. ତେଣୁ ଦାନାମାଣିର ପରିସମାପ୍ତିରେ ବଳୀଦତ୍ତ ସହିତ ପାଠକ ସମ୍ମୋହନଶୀଳ ଓ ସହାନୁଭୂତିଶୀଳ ହୋଇ ଯେଉଁ ମୁହୂର୍ତ୍ତରେ ବିଷାଦ ଓ ବେଦନା ଅନୁଭବ କରେ, ସେହି ମୁହୂର୍ତ୍ତିଟି କରୁଣ ହେଲେ ହେଁ ଚରମ ଆନନ୍ଦ ଦିଏ ।

ପରମମାତ୍ରେ ହିଁ ଲେଖକ ଏପରି ତାତ୍ପର୍ଯ୍ୟପୂର୍ଣ୍ଣକରିଛନ୍ତି ଯେ ଯାହା-ହାଡ଼ କ ବଳୀଦତ୍ତର କାରୁଣ୍ୟମୟ ଜୀବନର ଚିତ୍ର ଅଧିକ ସ୍ପଷ୍ଟ ହୋଇ ଉଠିଛି । ସାହେବର ଯେଉଁ ବଙ୍ଗଳାରେ ପୃଷ୍ଠରି ପୁଅ ଧରି ବଳୀଦତ୍ତ ଅପେକ୍ଷା କରି ରହିଥିଲା ସେହି ବୁଙ୍ଗଳାଟି ପାଇଁ ରହିଛି ବର୍ତ୍ତ୍ୟଅଫିସର ହୋଇ । ପୃଷ୍ଠରି ପୁଅରେ ଯେଉଁ ଫୁଲଗଛମାନେ ବଢ଼ିଥିଲେ ହୁଏତ ସେହି ଫୁଲ ମାନେ ତା'ର ବଙ୍ଗଳା ମଣ୍ଡନ କରୁଥିବେ । ନିଜ ଶ୍ରମର ଫଳ ନିଜେ ଭୋଗ କରିଛି । କିନ୍ତୁ ପୂର୍ବ ପରି ବାମରୁ ଫେରିଲା ବେଳକୁ ଖାଡ଼ମଣ୍ଟଳୀର ହସ ବାଡ଼ି ସଚେତନତା ଆଉ ହାଣ୍ଡିକବାଟ ଫିଟାଇ ନାହିଁ । ବରୁଚି ଖାନସାମା ଚପରାଶି ସମସ୍ତେ ଅଛନ୍ତି, କେବଳ ନାହିଁ ସଚେତନତା ।

ଅନେକ ଗ୍ରନ୍ଥ 'ଦାନାପାଣି'ରେ ଚେତନା ପ୍ରବାହ ବା ଚରିତ୍ର-ମାନଙ୍କର ମନୋଭାବନା ସ୍ଥାନ ପାଇଛି । କିନ୍ତୁ ପ୍ରକୃତରେ ଦାନାପାଣିରେ ଚେତନା ପ୍ରବାହର ପ୍ରତ୍ୟକ୍ଷ ରୂପ ଦେଖିବାକୁ ମିଳେ ନାହିଁ । କାରଣ ଚେତନା ପ୍ରବାହର ମୌଳିକ ଉପାଦାନ ଯାହା ସେଗୁଡ଼ିକ ମଧ୍ୟରୁ କୌଣସିଟିକୁ ଏଥିରେ ଲକ୍ଷ୍ୟକରି ହୁଏନି । ସାଧାରଣତଃ ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ସ୍ୱଗତୋକ୍ତି, ଅନୁଚ୍ଚାରିତ ଆତ୍ମକଥନ, ଅଜ୍ଞାତ ସ୍ମୃତିର ଉନ୍ମୋଚନ, ସ୍ୱପ୍ନପ୍ରବଣତା ଇତ୍ୟାଦି କୌଶଳରେ ଚେତନା ପ୍ରବାହକୁ ପ୍ରକାଶ କରାଯାଇଥାଏ । ଆଉମଧ୍ୟ ବିଶେଷ କୌଣସି ଭଙ୍ଗୀରେ ଚରିତ୍ରକୁ ରୂପାୟନ କଲାବେଳେ, ସମୟ ଓ କାଳର ଗତାନୁଗତିକତା ଓ ପୌର୍ବାପର୍ଯ୍ୟ ଅସ୍ୱୀକାର, ବହିର୍ଜାଗତିକ ବାସ୍ତବତା ପରିହାର, ଅନ୍ତର୍ମୁଖୀ ନବ ବାସ୍ତବତାର ପ୍ରବର୍ତ୍ତନ ଓ ଅର୍ଥହୀନ ବାକ୍ୟ ବିନ୍ୟାସ ଇତ୍ୟାଦି ଚେତନାର ପ୍ରବାହ ସୃଷ୍ଟି କରିଥାନ୍ତି । ଗୋଟିଏ ଦୁଇଟି ଚରିତ୍ରକୁ ମାଧ୍ୟମକରି ସେମାନଙ୍କ ମାନସ-ଆଲୋକର ଦୀପ୍ତିରେ ସମସ୍ତ ଜଗତକୁ ସ୍ୱୀକରଣ ବା ପ୍ରକାଶ କରାଯାଇପାରେ । ଅନେକ କ୍ଷେତ୍ରରେ ସାଧାରଣ ଭାଷାର ବ୍ୟବହାରକୁ ତ୍ୟାଗ କରାଯାଇ ଓ ଅଭିଧାନଗତ ବାକ୍ୟକୁ ଅତିକ୍ରମକରି ବ୍ୟଞ୍ଜନାର ପ୍ରାଧାନ୍ୟ ଦିଆଯାଇଥାଏ । ଏ ସମସ୍ତ ମୌଳିକ ଗୁଣକୁ କୌଣସି ଗୋଟିଏ ଉପନ୍ୟାସରେ ଖୋଜି ପାଇବା କଷ୍ଟକର ହେଲେ ହେଁ ଏମାନଙ୍କ ମଧ୍ୟରୁ ଯେ କୌଣସି ଗୁଣ ଥିଲେ ତାକୁ ଚେତନା ପ୍ରବାହ ମୂଳକ ଉପନ୍ୟାସ କହିବାରେ କୌଣସି ବାଧା ନାହିଁ । ଇଂରାଜୀ ତଥା ଇଉରୋପୀୟ ସାହିତ୍ୟରେ ମର୍ସେଲ୍ ପ୍ରୁସ୍ତ୍, ଜେମ୍ସ୍ ଜୟ୍ସ୍, ଭର୍ଜିନିଆ ଉଲ୍ଫ୍ ଓ ଡ଼ଇଲିୟମ୍

ସଳ୍‌ନାର ଏବଂ ଅତ୍ୟାଧୁନିକ ଔପନ୍ୟାସିକ ଲରେନ୍‌ସ ଡ଼ାରେଲ୍‌ଙ୍କୁ ଚେତନା ପ୍ରବାହ ପଦ୍ଧତିର ଔପନ୍ୟାସିକ ଭାବେ ଗ୍ରହଣ କରାଯାଇପାରେ ।

'ଦାନାପାଣି'ରେ ସ୍ଥଳ ବିଶେଷରେ ବିଭିନ୍ନ ଚରିତ୍ରଙ୍କର ଚେତନା, କଳ୍ପନା ବା ଅତୀତ ସ୍ମୃତି ସ୍ଥାନ ପାଇଥିଲେ ହେଁ ତାହା ପ୍ରକୃତ ପକ୍ଷେ ଚେତନାର ପ୍ରବାହ ସୃଷ୍ଟି କରିବାରେ ସଫଳ ହୋଇନାହାନ୍ତି । ସରୋଜିନୀ ତା'ର କୁମାରୀ, ଗାଉଁଲି ଜୀବନର ସ୍ମୃତି କ୍ଷେତ୍ରରେ ବିଚରଣ କଲାବେଳେ କିମ୍ବା ନବବିବାହିତା ପତ୍ନୀ ସରୋଜିନୀ ସହିତ କଟାଇଥିବା କେତୋଟି ସୁଖ ଓ ଶାନ୍ତିମୟ ଦିନକୁ ବଳୀଦତ୍ତ ସ୍ମରଣ କଲାବେଳେ ଚେତନା ପ୍ରବାହର ସୂଚନା ମିଳୁଥିଲେ ହେଁ ନିରୀକ୍ଷଣ କଲେ ଜଣାଯାଏ, ପ୍ରକୃତରେ ବଳୀଦତ୍ତ ବା ସରୋଜିନୀ ଅତୀତକୁ ସ୍ମରଣ କରି ନାହାନ୍ତି । ନିଜେ ଔପନ୍ୟାସିକ ସେମାନଙ୍କ ମନ ରାଜ୍ୟରେ ବିଚରଣ କରି ମାନସ ଚେତନାକୁ ବାଛି ଆଣିଛନ୍ତି ।

ସେହିପରି ରଞ୍ଜିତ ଶର୍ମାର ଶବକୁ ଧରି ଫେରିଲାବେଳେ ତା'ର ଅବଚେତନ ମନର ସ୍ୱରୂପ ପ୍ରକାଶିତ ହୋଇଥିଲେ ହେଁ ତାହା ଲେଖକଙ୍କଦ୍ୱାରା ହିଁ ପ୍ରକଟିତ ହୋଇଛି ।

ମାନବ ମନର ଭାବ, ଭାବନାର ପ୍ରକାଶ ପାଇଁ ଭାଷା ହିଁ ପ୍ରକୃଷ୍ଟ ମାଧ୍ୟମ । କିନ୍ତୁ ଭାଷା ବା ଶବ୍ଦ ତା'ର ସାଧାରଣ ଇଲାକା ମଧ୍ୟରେ ରହି ଯାହା ପ୍ରକାଶ କରେ, ସେତିକି ଯଥେଷ୍ଟ ନୁହେଁ । କାରଣ କୌଣସି ଏକ ସାହିତ୍ୟିକ ବିଷୟର ସମ୍ୟକ୍ ହୃଦୟଙ୍ଗମ ପାଇଁ ବୁଦ୍ଧି ସହିତ ସହଜାତ ପ୍ରବୃତ୍ତି (Intuition)ର ମଧ୍ୟ ପ୍ରୟୋଜନ ରହିଛି । ସହଜାତ ପ୍ରବୃତ୍ତିର ଉଦ୍ରେକ, ଉଦ୍ଦୀପନ, ଗତିଶୀଳ ଓ ସମ୍ପ୍ରସାରକ ସାହିତ୍ୟିକ ଭାଷାଦ୍ୱାରା ହିଁ ସମ୍ଭବ ଏବଂ ଏହି ହେତୁରୁ ଚିତ୍ରକଳ୍ପ ବା 'ଇମେଜ୍'ର ପ୍ରୟୋଗ ହୋଇଥାଏ । ପାଠକ ପାଇଁ ଯାହା ଅରୂପ ଓ ଅବୋଧ୍ୟ ତାକୁ ରୂପବାନ୍ ଓ ବୋଧଗମ୍ୟ କରେ ଚିତ୍ରକଳ୍ପ । ଆଧୁନିକ ଉପନ୍ୟାସ, କବିତା ପରି ପ୍ରତୀକ, ବ୍ୟଞ୍ଜନା ଓ ଚିତ୍ରକଳ୍ପକୁ ସ୍ଥାନ ଦେଉଛି । ଗୋଟିଏ ଶବ୍ଦଦ୍ୱାରା ନୂଆ ନୂଆ ବ୍ୟଞ୍ଜନା ସୃଷ୍ଟି କରିବାରେ ଲେଖକର ମହତ୍ତ୍ୱ ପ୍ରକଟିତ ହେଉଛି । କିନ୍ତୁ ସିଧା ସଳଖ ନକହି ବୁଲେଇ ବଙ୍କେଇ ଅଯଥା ଗୁଡ଼ାଏ କଥାରେ ଗୋଟିଏ ବିଷୟକୁ ବ୍ୟକ୍ତ କରିବା ଚିତ୍ରକଳ୍ପର ଅର୍ଥ ନୁହେଁ । "ରତ୍ନବତ୍ କଠିନତା (Jewel like hardness) directness, objectivity ଏବଂ ଏକ ପରିଚ୍ଛନ୍ନ ସୋଜା ବକ୍ତବ୍ୟ

ଚିତ୍ରକଳ୍ପର ସଫଳତା ପାଇଁ ଏକାନ୍ତ ଲୋଡ଼ା ।" (ସଚ୍ଚି ରାଉତରାୟ—କବିତା ୧୯୬୨; ପୃ-୧୬୩) । ଭାଷା ବା ଶବ୍ଦ ପ୍ରୟୋଗରେ ସଂଯମ ରକ୍ଷା ବାଞ୍ଛନୀୟ । ତା' ଅର୍ଥ ନୁହେଁ ଯେ ଏହି ନିୟମର ବଶବର୍ତ୍ତୀ ହେଲେ ଉପନ୍ୟାସର କଳେବର କ୍ଷୁଦ୍ର ହେବ ।

'ଦାନାପାଣି' କ୍ଷୁଦ୍ର ନ ହୋଇ ଡାଉନ୍ ତିନିଶହ ଅଠାବନ୍ ପୃଷ୍ଠା ବିଶିଷ୍ଟ ହୋଇଥିଲେ ହେଁ ଭାଷାର ଗୀତିଧର୍ମିତା ଓ ବ୍ୟଞ୍ଜନାମୟତା ଏହାର ପ୍ରତ୍ୟେକ ସ୍ତରରେ ପ୍ରତିଫଳିତ । ଆଗାମୀ ବଂଶଧରଙ୍କୁ ଗର୍ଭରେ ଧାରଣ କରି ସରୋଜନୀ ଯେତେବେଳେ ଭାବେ "କ୍ଷେତ୍ର ଦେଉଛି ବୀଜ, କ୍ଷେତ୍ର ପାଉଛି ଅଙ୍କୁରର ଉଷ୍ଣତା, ସୃଜନର ପ୍ରତୀକ୍ଷା ତା'ର ପ୍ରକାଶ ପାଇଁ, ଗର୍ଭାଧାନର ଆନନ୍ଦରେ ଗରଭିଣୀ ମାଟି ପରିତୃପ୍ତ ଖୋଜନାହିଁ, ସେ ପରିପୂର୍ଣ୍ଣ—ଏତିକି ଯେପରି ଯଥେଷ୍ଟ" ସେତେବେଳେ ମନେହୁଏ ଆମେ ହୁଏତ କୌଣସି ଗୀତିକବିତା ପଢ଼ୁଛୁ, କିମ୍ବା ଶର୍ମା ଯେତେବେଳେ ତାଙ୍କ ଅତୀତକୁ ରୋମନ୍ଥନ କରନ୍ତି—"ଭାବିଲେ ଭାସି ଉଠେ କେତେ ମୁହଁ, ପୁଣି ବୁଡ଼ିଯାଏ, ଭାସିଯାଏ । ଅନେକ ସେ ଖେଳିଛି, ଖେଳଣା ଧରିଛି, ଫୋପାଡ଼ିଛି, ହଜେଇଛି, ଗୋଟେଇଛି, କେବଳ ବୁଝିଛି ଗୋଟିଏ କଥା—ଦୁନିଆଁରେ ମଣିଷ ମଣିଷ ଭିତରେ ସମ୍ବନ୍ଧ ଖାଲି ଖେଳର"—ଏତିକି ନୁହେଁ, ଏହିପରି ଆହୁରି ଅନେକ ଦୃଷ୍ଟାନ୍ତ ମିଳିବ, ଯାହାକୁ ନେଇ 'ଦାନାପାଣି' ହୋଇଛି ଭାଷାର ଚିତ୍ରଶାଳା କିନ୍ତୁ ଏ ଭାଷାରେ ରହିଛି ସାରଲ୍ୟ, ସ୍ୱତଃସ୍ଫୂର୍ତ୍ତିତା ଓ ସୂଚନାତ୍ମକତା ।

ଲେଖକ ସୂଚନା ତଥା ବ୍ୟଞ୍ଜନାକୁ ସ୍ଥାନ ଦେବାପାଇଁ ଚିତ୍ରକଳ୍ପକୁ ମାଧ୍ୟମ ଭାବେ ଗ୍ରହଣ କରିଛନ୍ତି ଏବଂ ଏହି ଚିତ୍ରକଳ୍ପ ଉପନ୍ୟାସର ମର୍ଯ୍ୟାଦାକୁ ବହୁଗୁଣିତ କରିପାରିଛି !

ପ୍ରଥମରୁ ଦୁଷରିଆ ପଲ୍ଲୀର ଗନ୍ଧକୁଡ଼ ତନଖି ତନଖି ବଳୀଦତ୍ତର ଧୂଷୂର ଧୂଅ ସଂଗ୍ରହ କରିବା ଦୃଶ୍ୟଟି ତା'ର କୁତ୍ସିତ, ଅପାଂକ୍ତେୟ, ପ୍ରାଣବନ୍ତ ବ୍ୟକ୍ତିତ୍ୱରହିଁ ବ୍ୟଞ୍ଜନା । କେବଳ ଏତିକି ନୁହେଁ, ବଳୀଦତ୍ତର ବ୍ୟକ୍ତିତ୍ୱକୁ ଲେଖକ କୁକୁର, ଘୋଡ଼ା, ମୂଷା, ଏଣ୍ଡୁଅ, ପାଟ, କର୍କଟ ପ୍ରଭୃତି ଇତର ପ୍ରାଣୀ ସହିତ ତୁଳନା କରିଛନ୍ତି ।

ସାହେବ ଘୋଡ଼ାରୁ ପଡ଼ିଯିବାର ଜାଣି ବଳୀଦତ୍ତ ଧାଇଁଛି ଘୋଡ଼ାର ବିପଣିତ ହାତରେ ସାହେବଙ୍କୁ ଖୋସାମତ୍ କରିବା ଉଦ୍ଦେଶ୍ୟରେ । "ଉତ୍ସାହୀ

ହୋଇ ରାସ୍ତାର ବୁଲା କୁକୁର ପଞ୍ଝାଏ ପିଠ୍ଠୁ ନେଲେଣି ।" (ପୃ-୧୯) ଏଇ ଚିତ୍ରକଳ୍ପ ଜରିଆରେ ବଳୀଦତ୍ତର କୁକୁରିଆ ବ୍ୟକ୍ତିତ୍ୱ ସୁସ୍ପଷ୍ଟ, ସେ ପୁଣି ପୋଷା କୁକୁର ନୁହେଁ, ବୁଲା କୁକୁର । ପୋଷା କୁକୁର ହୁଏତ କଣ୍ଟି ପାଇଥିଲେ କୃତଜ୍ଞତା ହେତୁ ପଛରେ ଧାଏଁ, କିନ୍ତୁ ଦୁର୍ବଳ, ଖାଦ୍ୟ ଭୁଖା କୁକୁର ପଛେ ପଛେ ଧାଏଁ କଣ୍ଟି ପାଇବା ଆଶାରେ । ବଳୀଦତ୍ତର ଯେତେବେଳେ ଧଇଁସଇଁ ହୋଇ ଧାଇଁବା ହେତୁ ମୁଣ୍ଡ ଉପରେ କୁମ୍ଭାଟୁଆ ବୋବାଉଛି, ସେତେବେଳେ ସେ ଦେଖୁଛି ପାଇବାର "ଉଷା ।" ବଳୀଦତ୍ତର ଏଇ ଖୋସାମଦିଆ ଦଉଡ଼ର ଚିତ୍ର ସୁନ୍ଦର ରୂପ ପାଇଛି ରାମବାବୁଙ୍କ ସ୍ତ୍ରୀଙ୍କ ବ୍ୟଙ୍ଗୋକ୍ତିରେ । ସେ କହନ୍ତି କଙ୍କି ପରି ଚେହେରା ବଳୀଦତ୍ତ, ଘୋଡ଼ାର କ୍ଷିପ୍ରତାକୁ ଗ୍ରହଣ କଲେ ବି ତା'ର ଗତି ଏଣ୍ଡୁଅର ଗତି ସହିତ ସମାନ ।

ବଳୀଦତ୍ତ ଯେତେବେଳେ ଜଗତ୍‌ବାବୁଙ୍କ ପାଖକୁ କିଛି ଉପଦେଶ ପାଇବା ଆଶାରେ ଯାଏ ଏବଂ ଶୁଣେ କେବଳ ତାଙ୍କ ଅସଫଳତାର କାହାଣୀ, ସେତେବେଳେ ତା'ର ବ୍ୟକ୍ତିତ୍ୱର ରୂପ ବଦଳି ଯାଏ । ବଳୀଦତ୍ତର ଖୋସାମଦିଆ, ଆଶାବାଦୀ ବ୍ୟକ୍ତିତ୍ୱ ମୂଷାପରି କଲବଲ ଓ ଛଟପଟ ହୁଏ ଜଗତବାବୁଙ୍କ ବ୍ୟକ୍ତିତ୍ୱର ବିଲେଇ ପାଖରେ । କାରଣ ଜଗତ୍‌ବାବୁ ନିର୍ଭୀକ ଓ ସାହାସୀ । ସତ୍ୟ ଅପ୍ରିୟ ହେଲେହେଁ ଶ୍ରେୟ । ସଦାବେଳେ ସେ ସତ୍ୟର ହିଁ ଆଶ୍ରୟୀ । କିନ୍ତୁ ବଳୀଦତ୍ତର ଗତି ସ୍ୱପକ୍ଷ ଧର୍ମୀ, ତେଣୁ ବଳୀଦତ୍ତ ଦେଖୁଛି ସବୁଆଡେ଼ ଧୂଳି । କେବଳ ମାଟି ନୁହେଁ, କାଗଜ ବି ଗୁଣ୍ଡ ହୋଇ ଯାଉଛି । ପୁରୁଣା କାଗଜ ପରି ଜଗତ୍‌ବାବୁଙ୍କ ନୀତି ଓ ଉପଦେଶ ଅତି ପୁରୁଣା । ଏ ଯୁଗର ପ୍ରତିନିଧି ବଳୀଦତ୍ତଙ୍କୁ ସେ ନୀତି ଖାପ ନାହିଁ । ଧୂଳିପରି ସେଗୁଡାକ ଅଲୋଡ଼ା । ତଥାପି ସେ ଧୂଳି ମାଡ଼ି ଆସୁଛି । ଆଖି, ନାକ, କାନରେ ପଶି ଅଣନିଶ୍ୱାସୀ କରିଦେଉଛି ତାକୁ କାହିଁକି ? କାରଣ ଆଦର୍ଶ ଓ ନୀତି ଚେତନ ମନକୁ ନ ସୁହାଇଲେ ବି ତା'ର ପ୍ରଭାବମୟୀ, ଆକର୍ଷଣୀୟ ଶକ୍ତି ରହିଛି । ସେହି ଶକ୍ତି ବଳୀଦତ୍ତର ଅଜାଣନ୍ତା ମନରେ ତାକୁ ଆକ୍ରମଣ କରୁଛି । ତେଣୁକରି ବଳୀଦତ୍ତ ପଳାଇ ଆସି ଖୁସି ହେଲା ତା'ର ବ୍ୟକ୍ତିତ୍ୱର ମୂଷାକୁ ନୀତିବାଦର ବିଲେଇ କବଳରୁ ରକ୍ଷାକରି ପାରିଛି ବୋଲି ।

ପ୍ରଥମ ପ୍ରମୋଶନ ପରେ ଅନ୍ୟ ସହରକୁ ଗଲାବେଳେ ବଳୀଦତ୍ତ ସରୋଜିନୀକୁ ଦେଖାଇ ଦିଏ ତା' ଅଫିସ ଘର ଝର୍କାରେ ଦେଉଳିଆ ମାସ

ଫଡ଼୍ ଫଡ଼୍ ହୋଇ ଉଡ଼ୁଛନ୍ତି । ବାହ୍ୟ ଦୃଷ୍ଟିରେ ଅଫିସ ଘରେ ପାରାର ଖୋପକୁ ଦେଖିଲେ ହେଁ ଅନ୍ତଃ ଦୃଷ୍ଟିରେ ସେମାନେ ପ୍ରକୃତ ପାରା ନୁହନ୍ତି । ସେମାନେ ହେଉଛନ୍ତି କିରାଣୀ, ଯେଉଁମାନେ କାଗଜ ଭିତରେ ଥିବା ପାରା-ମାନଙ୍କ ପରି ଅଫିସ ଘର ଭିତରେ ଲଦାଲଦି ହୋଇ ରହିଥାନ୍ତି ଏବଂ ପାରା-ମାନଙ୍କ ଅଦ୍ଭୁତ ହଜମ ଶକ୍ତି ପରି ସମସ୍ତ କ୍ଲାନ୍ତି ଓ କ୍ଲେଶକୁ ହଜମ କରିବାର ଶକ୍ତି ସେମାନଙ୍କର ଥାଏ ।

ବଳୀଦତ୍ତ ସେଇ ପାରାଗଡ଼ିକୁ ଦେଖାଇ ଦେଉଥିବାବେଳେ ସରୋଜନୀର ଦୃଷ୍ଟି ଥାଏ ଅନ୍ୟ ଆଡେ । କାରଣ ସେ ପୁରୁଣା ଯାଗାର ମମତା ଛାଡ଼ି ନୂତନ ପଥର ଯାତ୍ରୀ । ନବୀନ ଅଭିଯାନ ବିରୁଦ୍ଧରେ ତା'ର ଆତ୍ମା ବିଳାପ କରୁଥିଲେ ହେଁ, କମ୍ପା ଅନ୍ତରରୁ ନାହିଁ ନାହିଁ ରବ ଫୁଟି ଉଠୁଥିଲେ ହେଁ ତାକୁ ଆଗକୁ ପାଦ ବଢ଼ାଇବାକୁ ହିଁ ହେବ । କିନ୍ତୁ ସେ ଯାତ୍ରା ଆଣି ଦେଉଛି କ୍ଲାନ୍ତି, ମନେ ହେଉଛି ସେ ବଡ଼ ସତେ ଅବା ଅସହାୟ ।

ସରୋଜନୀ ମନର ଏଇ ଅବସ୍ଥା ବାସ୍ତବ ରୂପ ନେଇଛି 'ଶଗଡ଼' ଚିତ୍ରକଳ୍ପରେ, ଶଗଡ଼ର କେଁ କେଁ ଶବ୍ଦ ସରୋଜନୀର ଆପତ୍ତି ଓ ବିଳାପର ଧ୍ୱନି ଏବଂ ତା'ର ଧୀର ମନ୍ଥର ଗତି ସରୋଜନୀର ଅନିଚ୍ଛା ଯାତ୍ରା ସହିତ ସମାନ ।

ସରୋଜନୀର ମମତାର ବନ୍ଧନକୁ କାଟି ଆଗକୁ ଚାଲିଲା ବେଳେ ଆଖି ଆଗରେ ଦେଖେ ଘୁଡ଼ି ଉଡ଼ିବାର ଦୃଶ୍ୟ । ସେ ଘୁଡ଼ି ମା'ପୁଅ ଓ ମୋହର ଘୁଡ଼ି କାଲ୍ କଟା ଘୁଡ଼ିର ସୂତା ଧରେ ସେ ଦୁହେଁ । ସେ ଘୁଡ଼ି ଉଡ଼ୁଛି, ଓହ୍ଲାଉଛି, କଟାକଟି ହେଉଛି । କଲୋନୀ ଗୁରୁ, ମହାପାତ୍ର ବାବୁଙ୍କ ପରି ଅନେକଙ୍କଠାରୁ ସରୋଜନୀର ମମତାର ଡୋର କଟୁଛି, ପୁଣି ନୂଆ ପରିବେଶ ଓ ଅଫିସରର ଗୃହିଣୀ ପଣ ମନର ଘୁଡ଼ିକୁ ଉଡାଉଛି । କିନ୍ତୁ ଯେତେବେଳେ ସେ ଘୁଡ଼ି କଟୁଛି, ସେତେବେଳେ ଆଖିରୁ ଝରି ପଡ଼ୁଛି ଟପ୍ ଟପ ଲୁହ ।

ଜୀବିକା ହେଉଛି ବଳୀଦତ୍ତର ଜୀବନ । ରାତି ସାଢ଼େ ଏଗାରଟା ପର୍ଯ୍ୟନ୍ତ ମହାପାତ୍ର ବାବୁଙ୍କ ଘରେ ଖଟି ଖଟି ପୁଣି ସକାଳୁ ଉଠି ଅଫିସରେ କରେ ଫାଇଲ୍ କାମ । ସାଢ଼େ ଦଶଟାରେ ଫେରି ଗରମ ଭାତ, ଡ଼ାଲି ଡ଼ାଲି ଡାଲିପାଣି ଦରସିଝା ଆଳୁ ଖାଇ ପୁଣି ଧାଏଁ ଅଫିସ । ସେଥିପାଇଁ ଶୋଚନା ନାହିଁ, ବରଂ ଆନନ୍ଦ ପାଏ ବଳୀଦତ୍ତ । ସେଇ ତା'ର ଜୀବନର କବିତା, ଅଦ୍ଭୁତ ତା'ର ରୁଚି ।

ବ୍ୟକ୍ତି ବିଶେଷରେ ଶ୍ରଦ୍ଧା ଓ ରୁଚି ଭିନ୍ନ । ମହକ ଭରା ଝୁଲୁ ଝୁଲୁ ଧଳାଫୁଲ ପରି ହସ ଖୁସି କାହାର ପ୍ରିୟ । କାହାର ପ୍ରିୟ ଲହଭରା ଗନ୍ଧ । ଏଇଟି ବଳୀଦତ୍ତର ରୁଚି ବାସ୍ତବ ରୂପ (Real image) ଯେମିତି ଗୋଟିଏ ଦୃଶ୍ୟରେ । ଖଇଗଦାରେ କାଉ ବଂପ୍ରୁଛି । ରାସ୍ତା କଡ଼ରେ କୁକୁରଟିଏ ମନ ଦେଇଛି ଫାଟେଲ ଫିମ୍ପିମରା ଖଣ୍ଡିଆ ଜୋତାରେ । କାଉର ପ୍ରିୟ କେକୁଡ଼ । ସେଥିରେ ହିଁ ତାର ତୃପ୍ତି । ସେମିତି ମଧ୍ୟ କୁକୁରର ପ୍ରକୃତି । ଫିମ୍ପିମରା ଖଣ୍ଡିଆ ଜୋତାକୁ ରେକେଟି ରେକେଟି ଖାଇବାରେ ପେଟ ପୂରି ନପାରେ, କିନ୍ତୁ ଆନନ୍ଦ ପାଏ । ବଳୀଦତ୍ତର ରୁଚି ସେହିପରି । ବଳୀଦତ୍ତର ଆଖି ଆଗରେ ବନ୍ଧୁ ଓ ପରବର୍ତ୍ତୀ ଜୀବନରେ ରଣଜିତ୍‌ର ଦୃଷ୍ଟାନ୍ତ ପାଇଥିଲେ ହେଁ ତା'ର ରୁଚି ବଦଳି ନାହିଁ ।

ପ୍ରଥମ ପ୍ରମୋଶନ ପରେ ବଳୀଦତ୍ତ ଯେତେବେଳେ ଯାଏ ବନ୍ଧୁ ଘରକୁ, ସୁରୁଣା ପରିଚିତ ବନ୍ଧୁର କୁକୁର, ଟମି, ଭୋଃ ଭୋଃ କରି ଗୋଡ଼ାଇ ଆସେ ବଳୀଦତ୍ତ ପାଖକୁ । କ୍ରମେ କ୍ରମେ କାଳୀ କୁତ୍ତୀକୁ ସାହାଯ୍ୟ କରନ୍ତି ସାହିର ଅନ୍ୟ କୁକୁରମାନେ । ଏଇ ଘଟଣାଟି ମଧ୍ୟ ଜଣାଇଦିଏ ଯେ ଏମାନଙ୍କ ଆକ୍ରମଣ କେବଳ ବଳୀଦତ୍ତ ଉପରେ ନୁହେଁ । ବଳୀଦତ୍ତ ପରି ଅନ୍ୟାନ୍ୟ ସୁବିଧାବାଦୀ ଗୋଷ୍ଠୀଙ୍କ ଉଦ୍ଦେଶ୍ୟରେ ଏହା ହେଉଛି ସର୍ବହରାର ବିପ୍ଲବ । କିରାଣୀ ଗୋଷ୍ଠୀ ସେଇ ସର୍ବହରାଙ୍କ ଦଳର ଅନ୍ତର୍ଭୁକ୍ତ । ତେଣୁ ବଳୀଦତ୍ତ ଯେତେବେଳେ କିରାଣୀ ଥିଲା ସେତେବେଳେ ଟମି ତାକୁ ଶୁଂଘି ଶୁଂଘି ବାଟ ଛାଡ଼ ଦେଉଥିଲା । କିନ୍ତୁ ବର୍ତ୍ତମାନ ବଳୀଦତ୍ତର ପ୍ରମୋସନ ହେଉଛି ଅଫିସର ଶ୍ରେଣୀକୁ । ତେଣୁ ସେ ଅଳ-ସୁବିଧାବାଦର ପ୍ରଥମ ପାହାଚରେ ଆରୂଢ଼ । ବନ୍ଧୁ ସଦାବେଳେ ପ୍ରତିବାଦର ସ୍ୱର ତୋଳିଛି ସୁବିଧାବାଦ ବିରୁଦ୍ଧରେ । ସେଥିପାଇଁ ବନ୍ଧୁର କୁକୁର ଟମି, ବନ୍ଧୁର ପ୍ରତିନିଧିତ୍ୱ କରିଛି । ଅବଶ୍ୟ ଟମିର ଅଭିଯାନ ସଫଳ ହୋଇନ, ବନ୍ଧୁର ଇଂଗିତରେ ଟମି ବଳୀଦତ୍ତକୁ ବାଟ ଛାଡ଼ ଦେଇଛି । ଅନ୍ୟ ଦୃଷ୍ଟିରେ ବିଚାର କଲେ ଟମି ଅପମାନିତ ହୋଇଥିଲେ ହେଁ ଏହା ପ୍ରକୃତ ପରାଜୟ ନୁହେଁ । କାରଣ ଟମି ବନ୍ଧୁକୁ ହିଁ ପ୍ରତିଧ୍ୱନିତ କରିଛି ଏବଂ ଯେହେତୁ ଟମି ଓ ବନ୍ଧୁ ବିରୋଧି ଗୋଷ୍ଠୀର ଅନ୍ତର୍ଭୁକ୍ତ ତେଣୁ ଟମି ବନ୍ଧୁର ଇଂଗିତରେ ହିଁ ବଳୀଦତ୍ତଠାରୁ ଲେଉଟି ଆସିଛି, କିନ୍ତୁ ଯେତେବେଳେ ବଳୀଦତ୍ତ ପ୍ରତ୍ୟାକ୍ରମଣ କରିବାକୁ ଇଚ୍ଛା ଗୋଟାଇଥିଲା ସେତେବେଳେ ସେ

ଉଡ଼ନ୍ତି, ଠିକ୍ ଯେପରି ବାବୁ, ଅଫିସରେ ମାଡ଼ଗୋଳକର ଗୃହକର୍ମରୁ ଗୃହ ଆସିଛନ୍ତି ସିନା କାହାର ନାଲି ଆଖିକୁ ଭୟ କରନ୍ତି ।

ଯେତେବେଳେ ବଳୀଦତ୍ତ ଓ ବସନ୍ତବାବୁ ନୂଆ ସାହେବର ପ୍ରଶଂସା କରିବାପାଇଁ ପ୍ରତିଯୋଗିତା କରନ୍ତି ସେତେବେଳେ ରାସ୍ତାରେ ଯାଉଥିବା ଗୋଟିଏ ବିଜ୍ଞାପନର ଛବି ଆଖିରେ ପଡ଼େ ଯେଉଁମାନେ କାଗଜର ବିଜ୍ଞାପନ ଧରି ବୁଲୁଛନ୍ତି, ସେମାନେ ମୁହଁରେ କଳା ମାଖିଛନ୍ତି, ମୁଣ୍ଡରେ ଗୋଜା ଟୋପି ନାଇଛନ୍ତି । ରଙ୍ଗଢ଼ଙ୍ଗର ଟୋପି ପିନ୍ଧି, ଢୋଲ ପିଟି ବୁଲୁଛନ୍ତି । ବଳୀଦତ୍ତ ଓ ବସନ୍ତ ବାବୁଙ୍କ ପାଟିରେ ଅଫିସରଙ୍କ ପ୍ରଶଂସା ବାସ୍ତବ ରୂପ ନେଇଛି ରାସ୍ତାର ବିଜ୍ଞାପନରେ । କାରଣ ଏ ଯୁଗ ବିଜ୍ଞାପନର ଯୁଗ । କଳାମଖା ଟୋପିପିନ୍ଧା, ରଙ୍ଗଢ଼ଙ୍ଗିଆ ବିକୃତ ମଣିଷ ସେ ହୋଇ ଥାଇପାରେ, କିନ୍ତୁ ଢୋଲ ପିଟି ଜନତାର ଦୃଷ୍ଟି ଆକର୍ଷଣ କରିବା କ୍ଷମତା ତା'ର ଅଛି । ସେହିପରି ଏମାନଙ୍କ ଗୁଣର ପ୍ରଶସ୍ତି, ହରିନାମ, ପ୍ରକୃତି ବର୍ଣ୍ଣନା କିମ୍ବା ଦେଶ ବନ୍ଦନା ହୋଇ ନପାରେ, ତଥାପି ଉପରିଙ୍କର ପ୍ରଶସ୍ତି ମାଧ୍ୟମରେ ନିଜକୁ ପ୍ରଦର୍ଶିତ କରିବାର ମନୋବୃତ୍ତି ସୁସ୍ପଷ୍ଟ ।

ସେହିପରି ବଳୀଦତ୍ତର ପଦୋନ୍ନତିପରେ ସରୋଜମା ଶାଢ଼ି, ଲୁଗା, ଗହଣାରେ ବୁଡ଼ି ରହିଥିଲେ ହେଁ ଅନୁଭବ କରେ ଚଢ଼େଇ ଗୁଡ଼ାକ ଉଡ଼ି ଯାଇଛନ୍ତି, ପତ୍ର ଶୁଖିଯାଉଛି, ନଈ ମରିଯାଇଛି । କିନ୍ତୁ ପ୍ରକୃତରେ ଚଢ଼େଇ ଉଡ଼ି ନାହାନ୍ତି, ଭୁଲି ଯାଇଛି ସବୁ ଆଶା, ପତ୍ର ଝଡ଼ିନି, ପତ୍ରର ସବୁଜ ସରସତା ତା'ର ଶୁଖିଲା ପଡ଼ିଛି ନଈ ମରିଯାଇନି, ମରିଯାଇଛି ସରୋଜମାର ମନ ।

ଶେଷରେ ସରୋଜମା ବଦଳିଛି । କେବଳ ବଦଳି ନାହିଁ, ପଦ୍ମଫୁଲ, ଫୁଲ ତୋଳାଳିଠାରୁ ଦୂରରେ ରହି ମୁଣ୍ଡ ଟେକିଲେ ପରି ସରୋଜମା ବଳୀଦତ୍ତକୁ ପ୍ରଲୁବ୍ଧ କରିଛି; କିନ୍ତୁ ଧରାଦେଇନି, ଦୁଇଜଣଙ୍କ ମଧ୍ୟରେ ଦୂରତା ରହିଛି ଅନେକ ।

ମନର ଭାବନାକୁ ରୂପ ଦେବାପାଇଁ ଅନେକ କ୍ଷେତ୍ରରେ ବାସ୍ତବ ବସ୍ତୁର ଆରୋପ କରାଯାଇଛି । ସରୋଜମାର ପରିବର୍ତ୍ତନରେ ବଳୀଦତ୍ତ ଯେତେ-ବେଳେ ବ୍ୟସ୍ତ ଠିକ୍ ସେତେବେଳେ ତା'ର ଦୃଷ୍ଟି ପଡ଼େ "ସ୍ଥଳ ଯୁଦ୍ଧବାହିନୀର

ସେନାପତି ଜେନେରାଲ୍ ଡଡ୍‌ସନଙ୍କ ପତ୍ନୀଙ୍କୁ ଅନ୍ୟଜଣେ ହରଣ କରି ନେଇଥିବା" ସମ୍ବାଦ ଉପରେ । ସାଧାରଣ ଅର୍ଥରେ 'ବଳୀଦତ୍ତ ଅବସରରେ ସମ୍ବାଦ ପତ୍ର ପଢ଼ୁଥିଲେ ହେଁ ଅନ୍ୟ ଅର୍ଥରେ ଏହି ସମ୍ବାଦଟି ବଳୀଦତ୍ତଠାରୁ ସରୋଜନୀର ମନ କେତେଦୂରକୁ ଖସିଯାଇଛି ତାହାହିଁ ସୂଚାଇ ଦେଇଛି ।

ଠିକ ସେହିପରି ବଳୀଦତ୍ତର ପାରିବାରିକ ଜୀବନକୁ ଲକ୍ଷ୍ୟକରି ସରୋଜନୀ ଯେତେବେଳେ ଚିନ୍ତାକରେ, ସେତେବେଳେ ତା'ର ଅବବୋଧରେ ଜଣାପଡ଼େ ବଳୀଦତ୍ତ ବ୍ୟକ୍ତି ନୁହେଁ, ପଶୁ । ଅବଶ୍ୟ ନାରୀ ଆଗରେ ସବୁ ପୁରୁଷ ହିଁ ଜନ୍ତୁ, ତଥାପି ସେହି ଜନ୍ତୁମାନଙ୍କ ଭିତରେ ବଳୀଦତ୍ତ ପଶୁରାଜ ସିଂହ ନୁହେଁ, ଦୁଇଟା ଶିଙ୍ଘ ଓ ଛୋଟ ଲାଂଗୁଡ଼ ଥିବା ମିଁ ମିଁ କରା ଛୋଟ ଜନ୍ତୁଟିଏ । ସରୋଜନୀର ଏଇ ଧାରଣା ରୂପ ପାଇଛି ଫାଟକ ପାଖେ ଶୁଂ ଶୁଂ କରି ପଶି ଆସୁଥିବା ଗୋଟିଏ ଛେଳିଠାରେ । ବାସ୍ତବ କ୍ଷେତ୍ରରେ ଛେଳିଟିଏ ପଶି ଆସୁଥିଲେ ହେଁ, ଏ ଘଟଣାର ସୃଷ୍ଟି ହୋଇଛି ବଳୀଦତ୍ତ ପ୍ରତି ସରୋଜନୀର ମନୋଭାବକୁ ସ୍ପଷ୍ଟ କରିବା ପାଇଁ । ମାଟି ଗୋବର ପାଣିପରି ଆଖି, କଳାପାଣି ବୋହି ପଡ଼ୁଥିବା ଛେଳିର ମୁହଁ ସହିତ ଅଫିସ ଫେରନ୍ତା ବଳୀଦତ୍ତ ମୁହଁର ସାମଞ୍ଜସ୍ୟ ରହିଅଛି । ଦୁର୍ବଳ, ଭୀରୁ, ପଛୁଆ ବ୍ୟକ୍ତିତ୍ୱ ପାଇଁ ଛେଳିକୁ କାବ୍ୟିକ ପ୍ରତିବିମ୍ବ ରୂପେ ବ୍ୟବହାର କରାଯାଇପାରେ । ତେଣୁ ଏଠାରେ ଛେଳି ରୂପକଳ୍ପର ପ୍ରୟୋଗ ମାଧ୍ୟମରେ ବଳୀଦତ୍ତର ବ୍ୟକ୍ତିତ୍ୱର ସ୍ପଷ୍ଟ ସୂଚନା ମିଳେ କିମ୍ବା 'ଛେଳି'କୁ ସରୋଜନୀ ମନର ଅତୃପ୍ତ କାମ ପ୍ରବୃତ୍ତିର ଏକ ପ୍ରତୀକ ରୂପେ ମଧ୍ୟ ଗ୍ରହଣ କରାଯାଇପାରେ ।

ସରୋଜନୀର ପ୍ରେମପାଇଁ 'ଶର୍ମାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ରଣଜିତ୍‌ବାବୁଙ୍କ ବ୍ୟକ୍ତିତ୍ୱ ଯେତେବେଳେ ନୂଆ ରୂପ ନଏ ସେତେବେଳେ ସେହି ନୂଆ ବ୍ୟକ୍ତିତ୍ୱର ଚିତ୍ର ପ୍ରକାଶପାଇଁ ଅରଣ୍ୟ ତୋଫାନର ଚିତ୍ର ଅଣା ଯାଇଛି । ସେ ପୁଣି ସାଧାରଣ ତୋଫାନ ନୁହେଁ, ଟିସଥିରେ ରହିଛି ଘଡ଼ଘଡ଼ି ଜଙ୍ଗଲ ଅନ୍ଧାରି, ନାଳ ଝରଣାର ଗର୍ଜନ, ପାହାଡ଼ର ନାଦ, ଧ୍ୱଂସର ପ୍ରହାର । ଭୟଙ୍କର ତୋଫାନର ଏଇ ପ୍ରାକୃତିକ ବର୍ଣ୍ଣନା ମଧ୍ୟରେ ପ୍ରଳୟ ଓ ବିନାଶର ଭାବ ବ୍ୟଞ୍ଜିତ । ତେଣୁ ରଣଜିତ୍‌ଙ୍କର ଆଦିମ ପ୍ରବୃତ୍ତି ମୁଣ୍ଡ ଟେକିଛି ଓ ସେ ମଧ୍ୟ ଅବଚେତନ ମନରେ ଲୋଡ଼ୁଛନ୍ତି ଶତ୍ରୁର ରକ୍ତ ଓ କଟା ମୁଣ୍ଡ ।

'ଦାନାପାଣି'ର ପ୍ରତ୍ୟେକ କ୍ଷେତ୍ରରେ ଏହିପରି ଅସଂଖ୍ୟ ରୂପକଳ୍ପର ପ୍ରକାଶ ଘଟିଛି। ଏପରିକି 'ଦାନାପାଣି' ବହିର ପ୍ରଚ୍ଛଦ (ସ୍ପାଇନଆକାର) ପଟରେ ମଧ୍ୟ ବ୍ୟଞ୍ଜନାର ଚିହ୍ନ ସୁସ୍ପଷ୍ଟ । ଇତସ୍ତତଃ କେତେଗୁଡ଼ିଏ ପାହାଚ ଉପରେ ପାଦ ରଖି ଖେପାଏପରେ ଖେପା ଚଢ଼ି ଯିବାର ଭଙ୍ଗୀରେ ଯେଉଁ ବ୍ୟକ୍ତିଟି ଧବା ତଳ ପାହାଚରେ ରହିଛି ସେ ବଳୀଦତ୍ତ ଛଡ଼ା ଅନ୍ୟ କେହି ନୁହେଁ । କରାଣୀ ପାହାଚରେ ଗୋଡ ରଖି ଅଫିସର୍ ପାହାଚକୁ ପାଦ ବଢ଼ାଇବା ଅବସ୍ଥାରେ ହିଁ ଆମେ ବଳୀଦତ୍ତକୁ ପ୍ରଥମେ ଭେଟୁ । କିନ୍ତୁ ସେତିକି ତା'ର ଲକ୍ଷ୍ୟ ନୁହେଁ । ସବା ଉପରେ ନାଲି ମୁକୁଟ ପିନ୍ଧି ଯେଉଁ କୁକୁଡ଼ାଟି ବସିଛି ସିଏ ସମସ୍ତ ଆଶା, କଳ୍ପନା ଓ ଆଭିଜାତ୍ୟର ପ୍ରତୀକ । ତାକୁଇ ଲକ୍ଷ୍ୟ କରି ବଳୀଦତ୍ତ ଆଗେଇଛି ଓ ଶେଷରେ କମ୍ପାନୀର ବଡ ସାହେବ ହୋଇ ତା' ପରିସର ଭିତରେ ସେ ନିଜକୁ ସମ୍ରାଟ କରିପାରିଛି । କୁକୁଡ଼ାର ସମସ୍ତ ଶରୀର ମଧ୍ୟରେ ନାଲି ମୁକୁଟଟି ହିଁ ଦୃଷ୍ଟି ଆକର୍ଷଣ କରିଥାଏ । ସେହିପରି ବଳୀଦତ୍ତ ତା'ର କୁତ୍ସିତ ଜୀବନ ଭିତରେ କେବଳ ପଦବୀ ଓ ଧନଦ୍ୱାରା ନିଜକୁ ଶୋଭନ ସୁନ୍ଦର କରିଛି ସିନା ଅନ୍ୟ କୌଣସି ମାନବିକ ଗୁଣରେ ନିଜକୁ ବିଭୂଷିତ କରିପାରିନି ।

'ଦାନାପାଣି'ର ସାମୂହିକ ଆଲୋଚନା ବେଳେ ଆଉ ଗୋଟିଏ ବିଷୟ ଦୃଷ୍ଟି ଆକର୍ଷଣ କରେ, ଯାହାକୁ ଆମେ Inony କହିପାରୁ । ଉପନ୍ୟାସର ଭବିଷ୍ୟତରେ ଯାହା ଘଟିବାକୁ ଅଛି ତାହାର ସୂଚନା ଲେଖକ ଅନେକ କ୍ଷେତ୍ରରେ ପୂର୍ବରୁ ଦେଇ ସାରିଛନ୍ତି ।

ବଳୀଦତ୍ତ ବନ୍ଧୁଘରୁ ଫେରିଲା ବେଳେ ରାଜକୁ ଭେଟିବା ଘଟଣାଟିକୁ ଆଲୋଚନା ପାଇଁ ନିଆଯାଇପାରେ । ଉଭୟଙ୍କ ବନ୍ଧୁଙ୍କର କଥୋପକଥନ ମଧ୍ୟରେ ରାଜ କହିଛି ବଳୀଦତ୍ତକୁ ଲକ୍ଷ୍ୟକରି—"ଅରେ ... ଯେତେ ବଡ଼-ହେଉ ଦୁଃଖଟା କୁଆଡ଼େ ଯିବ ? ଦୁଃଖ ଆସିବଇ ଆସିବ । ... ଆସିଲେ ସେ ପାଖେ ଯିବ । ଦରମା ବଢ଼ିଲେ ମହଙ୍ଗା ଭତ୍ତା କମିବ ।" (ପୃ—୫୦) ବଳୀଦତ୍ତର ପରବର୍ତ୍ତୀ ଜୀବନରେ ତାହା ହିଁ ଘଟିଛି । ଦରମା ବଢ଼ି ମହଙ୍ଗା ଭତ୍ତା କମିଛି । ଦରମା ଓ ପଦବୀ ବଢ଼ିଛି, କିନ୍ତୁ ସମ୍ମାନ ପାଇନି । ଧନ ପାଇଛି, ଶାନ୍ତି ହରାଇଛି ।

ଆଉ ଗୋଟିଏ ଅତି ସାଧାରଣ ଘଟଣାକୁ ଧରାଯାଉ । ପ୍ରଥମଥର ମହାପାତ୍ରେ ବଳୀଦତ୍ତ ଘରକୁ ଆସି ଥିବାର ସମ୍ବାଦ ଯେତେବେଳେ ସରୋଜନୀ ବଳୀଦତ୍ତଙ୍କୁ ଶୁଣାଏ ସେତେବେଳେ ସେ ରହସ୍ୟକରି କହୁଛି—"ମାରୁଥିଲେ ମହାପାତ୍ରେ ଗୁହଁଥିଲେ ଜଳକା, କଏ ସେ ମହାପାତ୍ରେ ?" (ପୃ—୫୯) ପ୍ରକୃତରେ ବଳୀଦତ୍ତ ଜଳକା ପରି ଚୁହିଁ ରହୁଛି, ଫାଟକ ଖୋଲା ପଡ଼ିଛି, ସରୋଜନୀ ଅନ୍ୟର ଗାଡ଼ିରେ ବସି ଚାଲିଯାଇଛି । ବଳୀଦତ୍ତ ଚାହୁଁ ଚାହୁଁ ସରୋଜନୀକୁ ଝାମ୍ପି ନେଇଛନ୍ତି ରଣଜିତ୍ ଓ ଶର୍ମା ।

ରଣଜିତ୍, ବଳୀଦତ୍ତ ଘରକୁ ବୁଲିଗଲା ବେଳେ ବଳୀଦତ୍ତର କଥା ଶୁଣି ସରୋଜନୀ ଯାହା କହିଥିଲା ତାହା ହିଁ ବାସ୍ତବ ଜୀବନରେ ଘଟିଲା । ରଣଜିତ୍‌କୁ 'ହୁକ୍' କରିବା କଥା ଶୁଣି ସରୋଜନୀ କହିଥିଲା ଏ ଯଦି ବଡ଼ମାଛ "ଆଉ ଥୋପ ହେବ କଏ ? ତମେ ନା ମୁଁ ?" (ପୃ—୧୦୦) । ପ୍ରକୃତ ଥୋପ ହୋଇଛି ସରୋଜନୀ । ସରୋଜନୀ ନ ଥିଲେ ଶର୍ମା ବା ରଣଜିତ୍ କାହାରଠାରୁ କିଛି ପାଇ ପାରି ନ ଥା'ନ୍ତା ବଳୀଦତ୍ତ ।

ସମସ୍ତ ସରସତା ମଧ୍ୟରେ 'ଦାନାପାଣି' ର ଗୋଟିଏ ତ୍ରୁଟି ଆମ ଆଖିରେ ପଡ଼େ, ତା' ହେଉଛି ସମାନୁପାତିକ ଭାଷା ବ୍ୟବହାରର ଅଭାବ । ଚରିତ୍ରମାନଙ୍କ ମୁଖରେ ସଂଳାପ ଅବଶ୍ୟ ଲେଖକ ଆଦୌ ଦେଇ ନାହାନ୍ତି କହିଲେ ଚଳେ । ତେଣୁ ଚରିତ୍ର ଉପଯୋଗୀ ଭାଷା ସୃଷ୍ଟି କରିବାର କୌଣସି ବାହାଦୁରି ଏଥିରେ ନାହିଁ । ସମ୍ପୂର୍ଣ୍ଣ ଉପନ୍ୟାସରେ ଲେଖକ ହିଁ ଆତ୍ମପ୍ରକାଶ କରିଛନ୍ତି ଏବଂ ଔପନ୍ୟାସିକର ଭାଷା ଦୃଷ୍ଟିରୁ ବିଚାର କଲେ 'ଦାନାପାଣି' ସର୍ବୋଚ୍ଚ ସ୍ଥାନ ଅଧିକାର କରିବ ସନ୍ଦେହ ନାହିଁ । ତଥାପି ଲେଖକଙ୍କର ଭାଷା ଓ ଚରିତ୍ରମାନଙ୍କ ମନୋଭାବକୁ ବ୍ୟକ୍ତ କରିବା ପାଇଁ ବ୍ୟବହୃତ ହୋଇ-ଥିବା ଲେଖକଙ୍କ ଭାଷା ମଧ୍ୟରେ ଏକ ପ୍ରକାର ସାମଞ୍ଜସ୍ୟ ରହିବା ଉଚିତ । ଏ ପ୍ରକାର ସାମଞ୍ଜସ୍ୟର ଅଭାବ ଦାନାପାଣିରେ ପରିଲକ୍ଷିତ ହୁଏ । ଅବଶ୍ୟ 'ଦାନାପାଣି'ର ସଫଳତା ଓ ଗୌରବର ସାଗରକୁ ଏ ସାମାନ୍ୟ ତ୍ରୁଟି ପଙ୍କିଳ କରିପାରିବ ନାହିଁ ସତ, ତଥାପି ଏଇ ସାମାନ୍ୟ ଦୋଷ ବିବର୍ଜିତ ହୋଇ ପାରିଥିଲେ 'ଦାନାପାଣି' ସମ୍ପୂର୍ଣ୍ଣ ପୃଥିବୀର ଉପନ୍ୟାସ ଜଗତରେ ଅକଳଙ୍କ ସ୍ଥାନ ଅଧିକାର କରିପାରିଥାନ୍ତା ।

———

# ଓଡ଼ିଆ କାବ୍ୟ ପରମ୍ପରାରେ

## ପ୍ରଣୟ ଦୂତୀ : ମାଲୁଣୀ

ନଦୀ ଆପଣାର ସୁଅ ଜରିଆରେ ସାଗରରେ ମିଳିତ ହେଲାଭଳି କିମ୍ବା ସାଗର ନିଜର ଢେଉ ପିଠିରେ ଚଢ଼ି ବେଳାକନ୍ୟା ସହ ପ୍ରୀତି ନିବେଦନ କଲାଭଳି ମଣିଷ ମଧ୍ୟ ପ୍ରଣୟ ବ୍ୟାପାରରେ କିମ୍ବା ପରିଚିତିର କ୍ଷେତ୍ର ପ୍ରସାରଣରେ ମିଳନ ପାଇଁ ତୃତୀୟ ପୁରୁଷର ପ୍ରୟୋଜନ ଅନୁଭବ କରିଛି । ଅବଶ୍ୟ ଏହାର ଆବଶ୍ୟକତା ବ୍ୟକ୍ତି ଓ ସମୟର ସୁବିଧା ଉପରେ ନିର୍ଭରଶୀଳ । କାରଣ ବର୍ତ୍ତମାନ ଯୁଗରେ ପ୍ରାକ୍-ବୈବାହିକ ପ୍ରେମ ପାଇଁ ବିଶେଷ ବାଧା ନ ଥିବାରୁ କାହାରିକୁ ମାଧ୍ୟମ ବା ମଧ୍ୟସ୍ଥ ରୂପେ ନିର୍ବାଚନ କରିବାକୁ ପଡ଼ୁନି । ନାୟକ ନାୟିକା ନିଜର ମିଳନ ପାଇଁ ବହୁଳାଂଶରେ ସ୍ୱୟଂଦୂତ ସାଜୁଛନ୍ତି । କିନ୍ତୁ ମଧ୍ୟ ଯୁଗରେ ଠାଣ ସାମାଜିକ ବ୍ୟବସ୍ଥା ଯୋଗୁ ଏ ପ୍ରକାର ମିଳନର ବିପୁଳ ସମ୍ଭାବନା ନଥିଲା । ଖୁବ୍ କମ୍ କ୍ଷେତ୍ରରେ ପ୍ରେମିକା ସ୍ୱୟଂଦୂତ ସାଜିବା ବ୍ୟତୀତ ତୃତୀୟ ପୁରୁଷ (ଯେଉଁମାନେ ଅନ୍ତରଙ୍ଗ ବନ୍ଧୁ, ଦାସୀ, ବ୍ରାହ୍ମଣୀ ଏବଂ ମାଲୁଣୀ) ଜରିଆରେ ମିଳନ ପଥ ସୁଗମ କରୁଥିଲେ । ଏହି ତୃତୀୟ ପୁରୁଷଙ୍କୁ କାବ୍ୟ ସାହିତ୍ୟରେ ବିଭିନ୍ନ ଭୂମିକାରେ ଦୂତ ଦୂତୀର ମର୍ଯ୍ୟାଦା ଦିଆ ଯାଉଥିଲା । ମଧ୍ୟ ଯୁଗୀୟ ସାହିତ୍ୟରେ ଏମାନଙ୍କ ବର୍ଣ୍ଣନା ବିପୁଳ ଭାବରେ ଦେଖାଯାଏ । ଏତଦ୍‌ବ୍ୟତୀତ ମାନବେତର ପ୍ରାଣୀ କିମ୍ବା ପ୍ରକୃତିକୁ କବି ଦୂତରୂପେ ପ୍ରୟୋଗ କରିଥିବା ଦୃଷ୍ଟାନ୍ତ ମଧ୍ୟ ସାହିତ୍ୟରେ ବିରଳ ନୁହେଁ । କେବଳ ପ୍ରାକ୍-ବୈବାହିକ ପ୍ରେମ କ୍ଷେତ୍ରରେ ନୁହେଁ ବିଭିନ୍ନ ପରିସ୍ଥିତିରେ ପ୍ରକାଶ ପାଉଥିବା ମାନବର ଅନ୍ତଃ ଚେତନାକୁ ବ୍ୟକ୍ତ କରିବାପାଇଁ ମଧ୍ୟ କବି ବହୁ ସମୟରେ ମେଘ, ହଂସ, କୋଇଲି ଇତ୍ୟାଦିଙ୍କୁ ଦୂତ ରୂପେ ନିଯୁକ୍ତ କରିଛନ୍ତି । ଯକ୍ଷ, ଯକ୍ଷ-ବଧୂ ନିକଟକୁ ସମ୍ବାଦ ପଠାଇଛନ୍ତି ମେଘ ମାଧ୍ୟମରେ ନଳ ଦମୟନ୍ତୀଙ୍କ ପ୍ରେମ ବ୍ୟାପାରରେ

ହଂସ ହୋଇଛନ୍ତି ପ୍ରଣୟ ଦୂତ । କୃଷ୍ଣ ବିରହ ବିଧୁରା ଯଶୋଦା କୋଇଲି ନିକଟରେ ମନର ବେଦନା ବ୍ୟକ୍ତ କରିଛନ୍ତି ।

ବୋଧହୁଏ ଆଧୁନିକ ଯୁଗପରି ମଧ୍ୟ ଯୁଗରେ ସମ୍ବାଦ-ପ୍ରେରଣର ସୁବିଧା ନ ଥିବାରୁ ଦୂତର ପ୍ରୟୋଜନ ବିଶେଷ ଭାବରେ ଅନୁଭୂତ ହେଉଥିଲା । ପ୍ରେମ ବ୍ୟାପାର ଗୋପନୀୟ ବିଷୟ ହୋଇଥିବାରୁ ସେ କ୍ଷେତ୍ରରେ ନିର୍ଦ୍ଦିଷ୍ଟ କେତେଜଣ ମାତ୍ର ଦୂତ ବା ଦୂତିକା ବୋଲି ଗୃହୀତ ହେଉଥିଲେ । ଅନ୍ତରଙ୍ଗ ବନ୍ଧୁ ହୋଇଛନ୍ତି ପ୍ରଣୟ ବ୍ୟାପାରରେ ବିଶ୍ୱସ୍ତ ସଖା । ତା'ପାଇଁ କିନ୍ତୁ ପ୍ରଣୟର ଗୋପନୀୟ ଘଟଣାବଳୀ ଗୋପନୀୟ ହୋଇ ରହିନଥାଏ । ଓଡ଼ିଆ କାବ୍ୟ-ସୃଷ୍ଟିରେ ଏପରି ବନ୍ଧୁଙ୍କ ବର୍ଣ୍ଣନା ବିରଳ ନୁହେଁ । କବିସୂର୍ଯ୍ୟଙ୍କ 'ଚମ୍ପୂ'ରେ ଲଳିତା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣା, ଏପରିକି ରାଧା ଓ ଲଳିତାଙ୍କ ମଧ୍ୟରୁ କିଏ ନାୟିକା ନିର୍ବାଚନ କରିବା କଷ୍ଟସାଧ୍ୟ । ବିଦଗ୍ଧ ଚିନ୍ତାମଣିରେ ମଧୁମଙ୍ଗଳ କୃଷ୍ଣଙ୍କର ସଖାରୂପେ ଓ ଲଳିତା ରାଧାଙ୍କର ସଖୀରୂପେ ଚିତ୍ରିତ । ସ୍ୱଧର୍ମ ଓ ସ୍ୱଗୁଣରେ ସେମାନେ କାବ୍ୟ ପୀଠରେ ଅବିଚ୍ଛେଦ୍ୟ । ଧନଞ୍ଜୟ ଭଞ୍ଜଙ୍କ 'ଇଚ୍ଛାବତୀ' ଓ 'ଅନଙ୍ଗରେଖା'ରେ ନାୟକ ନାୟିକାଙ୍କ ମିଳନ ପାଇଁ ସଖୀ ହୋଇଛନ୍ତି ଏକ ଅବିଚ୍ଛେଦ୍ୟ ଅବଲମ୍ବନ । ବିରହାବସ୍ଥାରେ ନାୟକର ଅସ୍ଥିର ଭାବକୁ ଲକ୍ଷ୍ୟକରି ଓ ତା'ର ବିଳାପକୁ ଅଗ୍ରାଧିକାର ଦେଇ ସହଚରୀ ଶୁକକୁ ଜେମାପୁରକୁ ଘେନି ଯାଇଛନ୍ତି (୧) । ସେହିପରି 'ଅନଙ୍ଗରେଖା'ରେ ରାଜପୁତ୍ରଙ୍କ ସଖା ଓ ରାଜଜେମାଙ୍କ ସଖୀଙ୍କ ଯୋଗୁଁ ସେମାନଙ୍କର ମିଳନ ସମ୍ଭବ ହୋଇଛି । ଏପରିକି ଦାସ ଦାସୀମାନେ ମଧ୍ୟ ଦୂତ ହେବାର ଦୃଷ୍ଟାନ୍ତ ଆମ ସାହିତ୍ୟରେ ଅବ୍ୟକ୍ତ ନୁହେଁ । ସାଧାରଣରେ ଦେଖିଲେ ଆଜ୍ଞା ବହନକାରୀ ଭୃତ୍ୟ ସେମାନେ । ତେଣୁ ଆଦେଶ ପାଳନ କରିବେ ନିଶ୍ଚୟ । ସେମାନଙ୍କ ମଧ୍ୟରୁ ଯେଉଁମାନେ ନିତାନ୍ତ ବିଶ୍ୱସ୍ତ ସେମାନଙ୍କ ଦ୍ୱାରା ହିଁ ଏହି ପ୍ରଣୟ ସମ୍ବନ୍ଧୀୟ କାର୍ଯ୍ୟ ନିର୍ବିଘ୍ନରେ କରାଯାଇଛି । ବ୍ରାହ୍ମଣୀମାନେ ଦୂତିକା କାର୍ଯ୍ୟରେ ଧୂରନ୍ଧର ଓ ପ୍ରତିପନ୍ନ ହୋଇଥିବାର ଉଦାହରଣ ଆମେ ଓଡ଼ିଆ ସାହିତ୍ୟରୁ ବହୁଭାବରେ ପାଉଁ । ସେମାନେ

---

୧ । ପୁଣି ସହଚରୀ ତାକୁ କରିଣ ଆଶ୍ୱାସ
ଶୁକକୁ ଘେନିଣ ଗଲା ଜେମାପୁର ପାଶ ।
( ଧନଞ୍ଜୟ ଭଞ୍ଜ—ଇଚ୍ଛାବତୀ—ଛାନ୍ଦ ୬।୪୨ ପଦ, ପୃ—୨୬ )

ଖଚ ମିଛ କହି ତଅପୋଇ ଘର ଭାଙ୍ଗିବାରେ ଯେପରି ତତ୍ପର ହୋଇଛନ୍ତି, ଦୂତିକା କାର୍ଯ୍ୟକରି ମିଳନ ସଂଘଟିତ କରିବାରେ ସେହିପରି ପାରଂଗମ ହୋଇଛନ୍ତି, ଭଞ୍ଜଙ୍କ 'ରସିକ ହାରାବଳୀ'ରେ ବ୍ରାହ୍ମଣୀ ଆସି ପ୍ରଥମେ ହାରାବଳୀର ରୂପ ବର୍ଣ୍ଣନା କରି ନାୟକ ମନରେ ପ୍ରେମଭାବ ଜାଗ୍ରତ କରିଛି । ମଧ୍ୟଯୁଗୀୟ କାବ୍ୟ ସାହିତ୍ୟରେ ସଖାଠାରୁ ସଖୀ, ଦାସଠାରୁ ଦାସୀ ଓ ବ୍ରାହ୍ମଣଠାରୁ ବ୍ରାହ୍ମଣୀ ଅଧିକ ମାତ୍ରାରେ ମଧ୍ୟସ୍ଥ ବୃତ୍ତି ଆଚରଣ କରିଛନ୍ତି । ତା'ର କାରଣ ହୁଏତ ସେହି ଯୁଗରେ ଯେ ପୁରୁଷ, ସମ୍ଭ୍ରାନ୍ତ ବଂଶୀୟ ରାଜକେମାମାନଙ୍କ ଅନ୍ତଃପୁରକୁ ଯିବାର ସମ୍ପର୍ଣ୍ଣ ସୁଯୋଗ ପାଇପାରୁ ନଥିଲା । କିନ୍ତୁ ସ୍ତ୍ରୀ ଝିଅଙ୍କ ନିଳୟକୁ ଯିବାରେ ନାରୀର କୌଣସି ବାଧା ନାହିଁ । ବିଶେଷତଃ କୋମଳ, ହୃଦବାନ ନାରୀ ପ୍ରେମିକ ପ୍ରେମିକାଙ୍କ ହୃଦୟର ବିରହଜ ତଥା ବିଷାଦ ବୋଧକୁ ହୃଦୟଙ୍ଗମ କରିବାରେ ଅଧିକ ସମର୍ଥା । ତେଣୁ ସମ୍ବେଦନଶୀଳା ହୋଇ ମିଳନ ଘଟାଇବା ପାଇଁ ସେ ଯଥାସାଧ୍ୟ ଚେଷ୍ଟା କରେ ସେଥିପାଇଁ ବୋଧହୁଏ ଦାସୀ, ସଖୀ, ବ୍ରାହ୍ମଣୀ ଓ ମାଲୁଣୀର ଦୂତିକା ହେବା ଦୃଷ୍ଟାନ୍ତ ଆମେ ବେଶୀ ମାତ୍ରାରେ କାବ୍ୟ ସାହିତ୍ୟରୁ ଉପଲବ୍ଧି କରିଥାଉ ।

ମାଲୁଣୀର ଫୁଲ ଘରଠୁ ଘରଣୀ ଓ ଝିଅଠୁ ଝିଆଣୀଙ୍କ ଯାଏ ସମସ୍ତଙ୍କୁ ଆଦର ଆଞ୍ଜୁଳାରେ ଆପଣାର କରିଥାଏ । ଏଇ ଫୁଲ ପେଡ଼ିର ଆକର୍ଷଣରେ ସେ ସମସ୍ତଙ୍କ ଅନ୍ତଃପୁରକୁ ପ୍ରବେଶ କରିବାର ଅବାଧ ଅଧିକାର ଲଭ କରିଥାଏ । ସେହି ସୂତ୍ରରେ ସେ ଝିଅ ବୋହୂଙ୍କ ସହ ମିଶେ ଏବଂ ସୁଯୋଗ ଓ ସୁବିଧା ଜାଣି ତାଙ୍କୁ ବେଶ ମଧ୍ୟ କରିଦିଏ (୨) । ସାଧବ ଝିଅରେ ମଧ୍ୟ ମାଲୁଣୀ, କୋମଳାଙ୍ଗୀ ସାଧବ ଝିଅକୁ ବନ୍ଧନ ଭାବରେ ବେଶ କରିଦେବାର ଦୃଷ୍ଟାନ୍ତ ମିଳେ (୩) । ସୁଦାମା ମାଳୀ କଂସଙ୍କୁ ବେଶ କରିଦେବା ବିଷୟ ଭକ୍ତ ଚରଣ ମଧ୍ୟ ମଥୁରା ମଙ୍ଗଳରେ ଉଲ୍ଲେଖ କରିଛନ୍ତି (୪) । ତେଣୁ ବାହାର ଦୁନିଆଁ ସହିତ ଅନ୍ତଃପୁରର ସଂଯୋଗ ସ୍ଥାପନା ପାଇଁ ମାଲୁଣୀ ହୁଏ ଏକ ଉତ୍କୃଷ୍ଟ ମାଧ୍ୟମ । ଆମର ଲୋକ କାହାଣୀ ଓ ମଧ୍ୟଯୁଗୀୟ କାବ୍ୟ କବିତାରେ ଏପରି ଦୃଷ୍ଟାନ୍ତ ପ୍ରଚୁର; କେବଳ ସେତିକି ନୁହେଁ, ବନ୍ଧନ ପରିପାଟୀରେ ଗୁନ୍ଥା ଫୁଲମାଳ କିଣିବା

୨ । ସଚିତ୍ର ଖାଉଡ଼ିଦ୍ୱୀପ—ପଲ୍ଲିଶ୍ରୀ

୩ । ମାନସିଂହ—ସାଧବ ଝିଅ—ପୃ ୧୪୧ ।

୪ । ଭକ୍ତଚରଣ—ମଥୁରା ମଙ୍ଗଳ ।

ପାଇଁ ମାଳଘରେ ଅନେକଙ୍କର ସମାବେଶ ହୁଏ । ସମସ୍ତ ଅସମୟେ କେହି କେହି ମଧ୍ୟ ସେଠି ରାତ୍ରି ଉଦ୍‌ଯାପନ କରଥାନ୍ତି । ଏଥିପାଇଁ ପରିଚିତ ଅପରିଚିତର ବନ୍ଧନ ନ ଥାଏ । ଅପରିଚିତ ବି ଅତିଥି ହୋଇପାରେ । କେତେକ ଲୋକ-ଗଳ୍ପରେ ଏବଂ ଲୋକଗଳ୍ପ ଉପରେ ଆଧାରିତ ସଚ୍ଚିରାଉତରାୟଙ୍କ 'ମାଲୁଣୀ' କବିତାରେ ଅପରିଚିତ 'ବିଦେଶୀ ଆସି ମାଲୁଣୀ 'ଘରେ ରହିବାର କାବ୍ୟ ପ୍ରମାଣ ଆମେ ପାଇଥାଉ । ମାଲୁଣୀର ଘର ତତ୍କାଳୀନ ପାନ୍ଥଶାଳା ଥିଲି କହିଲେ ଅତ୍ୟୁକ୍ତି ହେବନାହିଁ (୫) । ତେଣୁକରି ଯୁବକ ପ୍ରେମିକମାନେ ପ୍ରାୟ ଖୋଜି ଖୋଜି ଆସି ମାଲୁଣୀ ଘରେ ପହଞ୍ଚୁଥିଲେ । ମାନସିଂହଙ୍କ ସାଧବଝିଅରେ ମଧ୍ୟ ସାଧବସୁତ ବାଟରେ ମାଲୁଣୀକୁ ଭେଟିଛି । ସେ ଭଲ ଫୁଲ ଗୁନ୍ଥି ପାରିବା ଓ କେଶ ବିନ୍ୟାସ କରିପାରିବା ବିଷୟ, ଅବଗତ" ହୋଇ ତାକୁ ନିଜ ଘରେ ରହିବା ପାଇଁ ଡାକୁଛି (୬) । ପଦ୍ମପୁରାଣ ସ୍ଥିତ ମାଧବ ମଧ୍ୟ ସୁଲୋଚନାର ଖବର ପାଇ ମାଲୁଣୀ ଘରେ ଯାଇଁ ଅବସ୍ଥାନ କରିଛି । ବହୁ ସମୟରେ ମାଲୁଣୀ ତାହାର ଫୁଲବିକା ବ୍ୟବସାୟୀ ସମ୍ପର୍କରୁ ଊର୍ଦ୍ଧ୍ୱ ଗତକରି ଝିଅ ବୋହୂଙ୍କର ଅନ୍ତ ଅନ୍ତରଙ୍ଗ ସାଥୀ ହୋଇଉଠେ । ଆପଣାର ସାଥୀ, ପ୍ରାଣର ଦୋସର ମାଲୁଣୀ ନିକଟରେ ସ୍ୱାମୀ ବିରହ ତାପିତ କୁଳବଧୂ ନିଃସଙ୍କୋଚରେ ପ୍ରାଣର ଅଭିଳାଷ ପ୍ରକାଶକରି କୁହେ—

ପୂର୍ଣ୍ଣିମା ଦିନ ସେ ଗୋ ଆସିବେ ଘରେ
ବକୁଳ ମାଳା ଏକ ଗୁନ୍ଥି ଦେବ କି ?
( ସାଧବ ଝିଅ—ପୃ-୧୪୦ )

---

୫ । ମାଉସୀ ଘରେ ଧାନ ଦେଇଛୁ ରଖି ମାନ କଉଡ଼ି ଦେବୁ ଯେତେ ମାଗୁ
ଜାଣିଲ ପଛେ ସିନା ରଜାର ପୁଅ ବୋଲି ଜାଣିକି ଥିଲି ତାହା ଆଗୁ ?
( ସଚ୍ଚିରାଉତରାୟ—ମାଲୁଣୀ—ପଲ୍ଲିଶ୍ରୀ ପୃ-୫୯ )

୬ । ଗୁନ୍ଥିବ ମାଳା କାଳି ଯତନ କରି
ସାଧବ କନ୍ୟା ପାଶେ ନେବ ମୁଁ ଧରି
ଆସ କୁଟୀରେ—ଲେଉଟିଲି ଘରକୁ
ସାଧବ ପୁଅ ଚଳେ ଶିବ ସୁମରି
( ମାନସିଂହ ଗ୍ରନ୍ଥାବଳୀ—ସାଧବ ଝିଅ ପୃ-୧୪୩ )

ଅନୂଢ଼ା ଯୁବତୀମାନଙ୍କ କଥାତ ସହଜେ ଗୋପନୀୟ । ତାଙ୍କ ପ୍ରେମିକମାନଙ୍କ ପାଖକୁ ଖବର ପଠାଇବା ଓ ସେଠାରୁ ସମ୍ବାଦ ଆଣିବା କାର୍ଯ୍ୟଟି ଅତି ସଂଗୁପ୍ତ ଭାବରେ ସେ ସମ୍ପାଦ୍ତ କରିଥାଏ ।

ଆମେ ମାଲୁଣୀକୁ କେବଳ ଦୂତିକା ଭାବରେ ନ ଦେଖି ଯେଉଁଠି ତାକୁ ସଖୀ ଭୂମିକାରେ ଦେଖୁ ସେଠି ସେ ନିଜକୁ ଅନ୍ୟପାଇଁ ତିଳତିଳ କରି ତ୍ୟାଗ କରିଥିବା ଲକ୍ଷ୍ୟ କରୁଥାଉଁ । ହୁଏତ ସେ କେଉଁଠୁ କିଛି ପୁରସ୍କାର ବା ବଖଣ ପାଇଛି । କିନ୍ତୁ ଏହା ତାହାର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । ଉଭୟଙ୍କର ମିଳନରେ ତାହାର ସୁଖ । ସେଥିପାଇଁ ତାକୁ କିଛି , କଷ୍ଟ ସହିବାକୁ ପଡ଼ୁ ପଛକେ ସେଥିକୁ ସେ ଫେରେଇ ନଥାଏ । ଏଠି ସେ ସଖୀ, ଦୟାଶୀଳା କୋମଳ ହୃଦୟା ଓ କର୍ତ୍ତବ୍ୟ କରୁଣା ଏକନାରୀ । ଯାହାର ଖଟଣୀ ଫୁଲରେ ସେ ଜୀବିକା ଅର୍ଜ୍ଜନ କରେ ତା'ର ମଙ୍ଗଳ କାମନା ଅବଶ୍ୟ କରଣୀୟ ( ୭ ) । ସେଇଥିପାଇଁ ତ ଲାବଣ୍ୟବତୀ ଓ ଚନ୍ଦ୍ରଭାନୁଙ୍କ ପାଇଁ ନିଃସ୍ୱାର୍ଥପର ଭାବରେ ଚତୁର୍ଦ୍ଦଶୀ ଉପବାସ କରି ଶିବ ପାର୍ବତୀଙ୍କ ପାଖରେ ସେ ଜାଗର ଜାଳୁଥିଲା । ଏତ ନିସ୍ବାର ସ୍ୱଭାବ ସେ ପ୍ରାର୍ଥନା କରିଛି ଯେ ଫଳ ପ୍ରାପ୍ତି ବର୍ତ୍ତମାନ ହୋଇନାହିଁ ଏବଂ ତତ୍‌କ୍ଷଣାତ୍ ମଧ୍ୟ ସେ ଫଳପ୍ରାପ୍ତି ସମ୍ବାଦ ପ୍ରେମିକାକୁ ପରିବେଷଣ କରିଛି ( ୮ ) । ତା' ବୟସ ଷୋଳ କି ସତର । ତେଣୁ ଲାବଣ୍ୟବତୀର ସେ ସମବୟସୀ । ସମ୍ଭବତଃ ସେ ହୁଏତ ତା'ର ଅନ୍ତରଙ୍ଗ ବନ୍ଧୁ । ଯଦିଓ କବି ଭଞ୍ଜ 'ଲାବଣ୍ୟବତୀ'ରେ ଦେଇ ନାହାନ୍ତି ତେବେ ଲାବଣ୍ୟବତୀ ପାଇଁ ଆନ୍ତରିକ ଶ୍ରଦ୍ଧା ନଥିଲେ ଏଜନସ୍ଥ ଚିତ୍ତରେ ଶିବପାର୍ବତୀଙ୍କୁ

---

୭ । ତୋ ଖଟଣୀ ଫୁଲ ମୋର ଏଣୁ ଭଲ ବାଞ୍ଛା ତୋର
ବରକୁ ମୁଁ କହୁଥାଇଁ ସାଦରେ ଜଣାଇ
( ଲାବଣ୍ୟବତୀ – ଛ ୧୩—ପୃ-୧୫୪ )

୮ । ମୁଖ ମୃଦୁହାସେ ପୂର୍ଣ୍ଣିକଲେ ମୋତେ ଅବଧାନ
ନୃପଜା ପାଇଁକ ମୋତେ ଜଣାଉ ନଚ୍ଛେ
× × × ( ତତ୍ରୈବ—ପୃ-୧୫୫ )
ଏତେ ଆଜ୍ଞା ଦେଇ ହର ହୋଇଲା ବେଳୁ ଅନ୍ତର
ଆଉ ମୁଁ ନିଦ୍ରା ନାହିଁ ଅଇଲ କହି
( ତତ୍ରୈବ—ପୃ-୧୫୬ )

ଉପାସନା କରିବା ସମ୍ଭବ ହୁଅନ୍ତା ନାହିଁ । 'ଲାବଣ୍ୟବତୀ'ର ମାଲୁଣୀ ସମ୍ଭବତ 'ସାଧବଝିଅ' ମାଲୁଣୀର ବହୁସାମ୍ୟ ଥିଲେ ହେଁ ବୟପ୍ରବସ୍ଥ ଉପଯୋଗୀ ସହଜ ସରଳ ଭାଷା ଓ ପ୍ରକାଶ ଭଙ୍ଗୀର ସ୍ୱତଃସ୍ଫୂର୍ତ୍ତି 'ସାଧବଝିଅ'ର ମାଲୁଣୀକୁ ଅତି ଜୀବନ୍ତ ଓ ଅନ୍ତରଙ୍ଗ କରିଛି । ମାନସିଂହଙ୍କ ମାଲୁଣୀ ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣା । ଏଠି ସେ ସାଧବ ଝିଅର ଦୋସର, ସାହୁକାର ଓ ନିଜ ମା'ଠାରୁ ବି ଅଧିକ । ତେଣୁ ସେ ମାଲୁଣୀ ପାଖରେ ସଖୀ ପରି ସବୁକଥା ଖୋଲି କହୁଛି (୯) । କେତେ ତରୁଣୀଙ୍କର ଗୋପନୀୟ କଥା ତା' ହୃଦୟରେ ଗଚ୍ଛିତ, ପୁଣି କେତେ ମଧୁମୟ କଥା କହି ତାପିତ ହୃଦୟକୁ ଶାନ୍ତ କରିବାର କ୍ଷମତା ତା'ଠାରେ ରହିଛି । ସାଧବ ସୁନ୍ଦର ଖବର ଜଣାଇ ସେ କରିଛି ସାଧବ ଝିଅକୁ [illegible] । ମାଲୁଣୀ ଖୋଜିଛି ତା'ର ସାହୁକାର (୧୦) । ସେଇ ମାଲୁଣୀ ପୁଣି ଜନନୀଠାରୁ ଅଧିକ । ବୋଇତ ବନ୍ଦାଣରୁ ଫେରିବା ପରେ ସାଧବ ଝିଅର ଆଖିର ଲୁହ ସହିନପାରି ଦେଖିଛି ମାଲୁଣୀ । କୋଳକୁ ନେଇଛି ପୁଣି ଲୁହ ପୋଛିଚି । ମାଲୁଣୀ ଯାହା ଜାଣି ପାରିଛି "ନିଜରକତର ମା'ବି ସେ କଥା ଜାଣିନ ।" ସାଧବ ପୁଅ ଓ ଝିଅ ଲୁଚିକରି ଘରୁ ଗଲାବେଳେ ପାଦରେ ପ୍ରଣତି ଜଣାଇଛି । ପୁଣି ବାଟରେ ଯୁଦ୍ଧ ହେବାର ଶୁଣି ସେମା'ଙ୍କ ପାଇଁ ହୃଦୟ ତା'ର ବିଦୀର୍ଣ୍ଣ ହୋଇ ପଡ଼ିଛି । ଏହାଠାରୁ ଆଉ ଅଧିକ ଅନ୍ତରଙ୍ଗ କିଏ ହୋଇପାରନ୍ତା ?

ଧନର ପ୍ରଲୋଭନ ଦେଖାଇ ମନ କିଣା ଯାଇପାରେ ନା, ଏ ପ୍ରକାର ଲୋଭ ଥିଲେ ଜେମାଠାରୁ ରତ୍ନହାର ନେବାକୁ ସେ 'ଅସ୍ୱୀକାର କରିଥା'ନ୍ତା କାହିଁକି ? 'ସାଧବ ଝିଅ'ରେ ମାଲୁଣୀର ଚରିତ୍ର ଅତି ମହତ । ସେ ଯାହା କରିଛି ଜେମାର ସୁଖ ପାଇଁ-ନିଜର ସ୍ୱାର୍ଥ ପାଇଁ, ନୁହେଁ । ଗଡ଼ନାୟକଙ୍କ 'ଲଳିତା' କବିତାରେ ଲଳିତାର ଭାବମୂର୍ତ୍ତି ଯେପରି ପ୍ରକଟିତ ତାହା କେବଳ

---

୯ । ବନ୍ଧୁ ପ୍ରତିବାଧନା ସାଧନାରେ ତିଳେ ପ୍ରାଣର
ନୂତନ ପ୍ରମାଦ ବଖାଣିଲି ମଣି ଦୋସର
(ମାନସିଂହ ଗ୍ରନ୍ଥାବଳୀ—'ସାଧବ ଝିଅ'—ପୃ-୧୩୮)

୧୦ । ଭୁଲିତେ କହିବୁ ଦୂରୁ ହେଲେ ଦେଖାଇବୁ ଲୋ
ସାହୁକାର ହୋଇ ଜୀବନେ ଜୀବନେ ଥିବୁ ଲୋ
(ମାନସିଂହ ଗ୍ରନ୍ଥାବଳୀ—ପୃ-୧୪୯)

ଲଳିତା ନୁହେଁ ସମସ୍ତ ନିଃସ୍ୱାର୍ଥପର ଦୂତୀକାଙ୍କ ଚରିତ୍ରର ମହନୀୟତା ପାଇଁ ଯଥେଷ୍ଟ । ସେଠି ଦୂତିକା ପ୍ରେମିକାଠାରୁ ବି ମହତ୍ତ୍ୱ ଓ ତା'ର ଗୁରୁତ୍ତ୍ୱାଧିକ୍ୟ (୧୧) । 'ଲାବଣ୍ୟବତୀ' ଓ 'ମଧୁବନ୍ଦିଆ'ର ମାଲୁଣୀ ଏହିପରି ଏକ ମହତ୍ତ୍ୱ ଚରିତ୍ର ସମ୍ପନ୍ନ ନିଃସ୍ୱାର୍ଥପର ଦୂତିକା । ଅବଶ୍ୟ ଲୋକଗଳ୍ପ 'ଚମ୍ପାବତୀକଥା'ରୁ ମଧ୍ୟ ଆମେ ମାଲୁଣୀର ନିର୍ଭୀକ ଓ ଆଦର୍ଶବାଦୀ ବ୍ୟକ୍ତିତ୍ୱର ପରିଚୟ ପାଉ । ରାଣୀ ବହୁ ଧନରତ୍ନ ଯାଚିଲେ ମଧ୍ୟ ସେ ଅନ୍ୟାୟ କାମ କରିବାକୁ ରାଜି ହେଲା ନାହିଁ । କହିଲା "ବରଂ ଭିକମାଗି ଖାଇବି ଏ କଥା ହେବ ନାହିଁ" (୧୨) । ମହତ୍ କାର୍ଯ୍ୟାନୁଷ୍ଠାନରେ ହିଁ ତା'ର ଆଗ୍ରହ । ଦୟା ତା'ର ଚରିତ୍ରର ଐଶ୍ୱର୍ଯ୍ୟ । ତେଣୁ ଯେତେବେଳେ ମାଲୁଣୀ ବଗିଚାରେ ରହି ଭାସି ଭାସି ଯାଇଁ ଲାଗିଛି ସେ ତା'ର କାହାଣି ଅଟକଲିଚି ନାହିଁକି ହେଁ ସେତେବେଳେ ସେ ତାକୁ ଅକୁଣ୍ଠିତ ମନରେ ଉଦ୍ଧାର କରିଛି ଏବଂ ଧରମ ଝିଅ ମାନି ପାଳିଛି (୧୩) । ଅବୈଧ ଶିଶୁ କନ୍ୟା ସମ୍ପର୍କୀୟ ପିଲାକୁ ପାଣିରେ ଭସାଇ ଦେବା ଦୃଷ୍ଟାନ୍ତ ଆମେ ଲୋକଗଳ୍ପରୁ ପାଉ ଏବଂ ଯେଉଁମାନେ ନିଃସନ୍ତାନ ସେମାନେ ହିଁ ଆଗ୍ରହର ସହିତ ସେହି ଶିଶୁକୁ ପାଳନ କରିଥା'ନ୍ତି । କିନ୍ତୁ ମାଳି, ମାଲୁଣୀ ପାଣିରେ ଭାସି ଯାଉଥିବା ଏକାଧିକ କଅଁଳା ପିଲାଙ୍କୁ ନିଜ ଘରେ ସ୍ଥାନ ଦେଇଛନ୍ତି ଓ ଲାଳନ ପାଳନ କରି ମଣିଷ କରିଛନ୍ତି । ସେମାନେ ନିଃସ୍ୱ ତଥାପି ଉତ୍ତୁଙ୍ଗ ମାନବିକ ଅବବୋଧରେ ମହତ୍, ଶିଶୁପ୍ରେମ ଓ ସମ୍ବେଦନଶୀଳତାରେ ଉଦାର (୧୪) ।

---

୧୧ । ଆପଣାରେ କରି କଷ୍ଟି
ଅପରେ କରୁଁଛ ପୁଷ୍ଟି

ପ୍ରେମିକା ନୁହେଁତି ଦୂତୀ
ପ୍ରେମିକାର ତୁମେ ଗୁରୁ ଗୋ

( ଗଡ଼ଜାତୀୟ ଗ୍ରନ୍ଥାବଳୀ—'ଲଳିତା'—ପୃ ୨୨୦ )

୧୨ । 'ଚମ୍ପାବତୀ କଥା'—(ଲୋକଗଳ୍ପ ସଞ୍ଚୟନ—ଡଃ କୁଞ୍ଜ ବିହାରୀ ଦାଶ
ପୃ ୫୬୯ )

୧୩ । 'ମଣିଷ ବସ୍ତୁର ହେଉ' ଦେବତା ବସ୍ତୁର ହେଉ—
(ଲୋକଗଳ୍ପ ସଞ୍ଚୟନ—ପୃ-୨୦୪)

୧୪ । 'ସବୁଜାଣ ଚଢ଼େଇ'—ଲୋକଗଳ୍ପ ସଞ୍ଚୟନ ।

ସେ କଅଁଳ ମନ। ସେଇଥି ପାଇଁ ତ ସମସ୍ତଙ୍କ ନେହୁରା କଥାରେ ତା’ ମନ ତରଳେ। ଲୋକଙ୍କ ଉପରୋଧ ରଖି ଫୁଲ ଯୋଗାଇଦେଲେ ତା’ର ବ୍ୟବସାୟ ମୂଳରୁ ନଷ୍ଟ ହୁଏ ପଛକେ ସେ କାହାର କଥା ଏଡ଼ି ପାରେନା। ସେଥିପାଇଁ ରାଜପୁଅ ଓ ମନ୍ତ୍ରୀପୁଅଙ୍କ କଥା ଏଡ଼ି ନ ପାରି ଶେଷରେ ଉଆସର ପୋଇଲ ଠାରୁ ମାଡ଼ ଖାଇଛି, ଗାଲରେ ଚୂନକଳା ବୋଳି ଘରକୁ ଫେରିଛି। ହୁଏତ ପ୍ରଥମ ଥର ଜେମାଠାରୁ ସୁନାହାର ପାଇବା ଆଶାରେ ଫୁଲମାଳ ନେଇ ଯାଇଛି। କିନ୍ତୁ ଦ୍ୱିତୀୟ ଥର ମାଡ଼ ଖାଇ ଆସି ପୁଣି ସେମାନଙ୍କୁ ଘରେ ସ୍ଥାନ ଦେଲା କାହିଁକି ? ରାଜପୁଅ ହାତର ସୁନା ମୁଦିକୁ ଗ୍ରହଣ କରିଥିଲେ ବି ନେହୁରା କଥାରେ ସିଏଁ ଭୁଲିଗଲା, ସୁନାମୁଦି ପାଇଁ ନୁହେଁ (୧୫)। ଲୁହା କଅଁଳ ହେଲେ ବି କେଇ ବି ତାକୁ କାମୁଡ଼ିବାକୁ ସାହାସ କରେ। ସେହିପରି ସମସ୍ତଙ୍କର ମାଲୁଣୀ ଉପରେ ଆକ୍ରମଣ। ରାଜପୁଅ ଓ ରାଜଜେମାଙ୍କ ପ୍ରେମ ବ୍ୟାପାର ନ ହୋଇ ଯଦି ଅନ୍ୟ କେହି ଏପରି ଘଟଣାରେ ସମ୍ପୃକ୍ତ ଥା’ନ୍ତି ତେବେ ଆସି ବିପଦ ପଡ଼େ ମାଲୁଣୀ ଉପରେ। “ଦୂତିକା କାମ କର, ନ ହେଲେ ରାଜ୍ୟରୁ ତଡ଼ା ଖାଅ”—ଏ ପ୍ରକାର ଧମକ ଶୁଣିଲେ କିଏ ବା ଭୟଭୀତ ନହେବ ? ବିପଦରୁ ରକ୍ଷା ପାଇବା ପାଇଁ ସେ ନିଏ ମିଛର ଆଶ୍ରୟ। ରତ୍ନାବତୀକୁ ମିଛ କଥା କୁହେ ତା’ ସ୍ୱାମୀକୁ ହାଣ୍ଡି ମାରିବ। ଆହା ରକ୍ତ ନଦୀ ବହି ଯାଉଛି (୧୬)। ତେଣୁ ରାଜାଙ୍କୁ ବିବାହ କରିବା ତା’ର ଉଚିତ।

ମନୋନୁରଞ୍ଜକର ମୂରଲୀ ସ୍ୱନରେ ବିରହର ରାଗିଣୀ ଅଛି। ଗୋଲାପର ବୃନ୍ତରେ କଣ୍ଟା ଅଛି। କୋମଳ ହୃଦୟା, ଦୟାଶୀଳା ନାରୀ ଭିତରେ ରାକ୍ଷସୀ ବ୍ୟକ୍ତିତ୍ୱ ବି କେଉଁଠି କେମିତି ଛପି ରହିଛି। ଦୂତିକା ଗୁଡ଼ିଏ କିଛି ଅର୍ଥ, କିଛି ପୁରସ୍କାର, କିଛି ସାବାଶ୍। ସେତିକ ପାଇବା ପାଇଁ ସେ ହୁଏ ନରକର କୀଟ।

---

୧୫। ରଖିତୋ ସୁନାମୁଦି କାଢ଼ୁଛୁ କେତେ ଫନ୍ଦି
କରୁଛି କଥା ତୋର ବନ୍ଧ
ମାତର ନ ଛୁଇଁଲି ପଣତ ମୋ ଭିଡ଼ିଲା କହିଲା ଦେଇ ସାତ ରାଣ
ନେହୁରା ଭାଷା ଶୁଣି ଗଲି ମୁଁ ଗଲି ଭୁଲି କହିଲି ହେଉ ଏତେବେ ଆଣ।
( ମାଲୁଣୀ—ପଲ୍ଲୀଶ୍ରୀ—ସଚ୍ଚି ରାଉତରାୟ—ପୃ-୭୩ )
୧୬। ‘ଚତୁର ରତ୍ନାବତୀ’—ଲୋକଗଳ୍ପ ସଞ୍ଚୟନ—ପୃ-୨୦୭।

ନାୟକ ନାୟିକାଙ୍କ ମଧ୍ୟରୁ ଯାହାର ଜୀବନ ବିପନ୍ନ ହେଉ ପଛକେ ସେ ତା'ର ସ୍ୱାର୍ଥ ହାସଲ କରିବ, ଏହାହିଁ ତା'ର ଲକ୍ଷ୍ୟ; କୀଚକ ସହିତ ସୈରିନ୍ଧ୍ରୀଙ୍କୁ ମିଳିତ କରିବା ପାଇଁ ଯେପରି ଗୁହିଁଛି ଚପଳା (୧୭) । କେତେକ ମାଲୁଣୀ ଏ ପ୍ରକାର ହୀନ କାର୍ଯ୍ୟ କରିବାର ଦୃଷ୍ଟାନ୍ତ ଲୋକଗଳ୍ପରୁ ମିଳେ । ପ୍ରୟୋଜନ ସମୟରେ ଦୁଧଛେନାର ମଣ୍ଡା ପିଠାରେ ବିଷଦେଇ ରଜା ପୁଅକୁ ସେ ମାରିଛି । ମନ୍ତ୍ରୀପୁଅ ଯେତେବେଳେ ପଗୁରିଛି, ମିଛକଥା କହି ଭୁଲାଇଛି । କୁଆଁରୀଙ୍କ ଠାରୁ ଗୁପଡ଼ା ଖାଇ ମଧ୍ୟ ମନ୍ତ୍ରୀପୁଅ ଠାରୁ ସୁନାମୁଦି ପାଇ ପୁଣି ଭୁଲି ଯାଇଛି (୧୮) । ଏପରି ଜଘନ୍ୟ କାମ କରିବା ପାଇଁ ବିଧାତା ତାଙ୍କୁ ସୂକ୍ଷ୍ମ ବୁଦ୍ଧି ତଥା ପ୍ରତ୍ୟୁତ୍ପନ୍ନମତି ଦେଇଛନ୍ତି । "ରଜା ଝିଅର କବାକଣାରେ ଯାଇ ପହରୀଙ୍କ ଆଖିରେ ଲୁହ ରହିଲା ନାହିଁ । ସବୁଠୁ ବେଶୀ କାନ୍ଦିଲା ମାଲୁଣୀ" । ଲୋକଗଳ୍ପର ସୁର ସଙ୍ଗୀତ ଆଉ ରଜାଝିଅ ପ୍ରସଙ୍ଗରେ (୧୯) ମାଲୁଣୀର ପ୍ରତ୍ୟୁତ୍ପନ୍ନମତି ପ୍ରକାଶ ପାଇଛି ।

ମାଲୁଣୀ ବୁଦ୍ଧିମତୀ, ଉପସ୍ଥିତ ବୁଦ୍ଧି ଦ୍ୱାରା ସେ ବିପଦରୁ ରକ୍ଷାପାଏ, ନିଜର କାର୍ଯ୍ୟ ହାସଲ କରି ପୁରସ୍କୃତ ହୁଏ; କିନ୍ତୁ ଉନ୍ନତ ବୁଦ୍ଧି ତା'ର ନାହିଁ । ମାଲୁଣୀ ଲୁଗାରେ ଛୁଞ୍ଚସୂତା ଗଳାଇ ବଗିଚା ଝରକା ବାଟେ ପଦାକୁ ବାହାର କରିଦେବା, ହାତରେ ଚିଠି ଲେଖି ଗାଲରେ ଗୁପଡ଼ା ମାରିବାର ଅର୍ଥ ସେ ବୁଝେ ନାହିଁ । ଠିକ୍ ସେହିପରି ଅନ୍ୟଏକ ଉଆସର ପୋଇଲି, ମାଲୁଣୀ ପିଠିରେ ଦଣ୍ଡବେତ ଦେବା ବା ଲୁଗାରେ ହେଙ୍ଗୁଳ ଅଳତାରେ ଚିହ୍ନଗାର ଦେବାର ସାଂକେତିକତା ମନ୍ତ୍ରୀପୁଅ ବୁଝିଛି ସିନା ସେ ବୁଝି ପାରିନି ।

---

୧୭ । ତାହାଙ୍କ ମନ ତୋଷି ଧ୍ୟାନ ବହିବ, ସ୍ନେହ ଅରଜ ଚିର ସୁଖେ ରହିବ । ନିଶା ଶଶିର ସନ୍ଧ୍ୟା କରି ମିଳନ, ପାଏ ଉଜ୍ଜ୍ୱଳ ରକ୍ତ ରଙ୍ଗ ବସନ । ରାହୁ ଗ୍ରାସଇ ଆସି ଚନ୍ଦ୍ରକୁ ଯେବେ,ସନ୍ଧ୍ୟାର ଦୋଷ କାହିଁ ହୋଇଛି କେବେ ।

( କୀଚକ ବଧ—ଗଙ୍ଗାଧର ଗ୍ରନ୍ଥାବଳୀ ପୃ.—୧୪୫ )

୧୮ । ସୁର ସଙ୍ଗୀତ ଆଉ ରଜାଝିଅ କଥା—ଲୋକଗଳ୍ପ ସଞ୍ଚୟନ ପୃ-୨୮୯।

୧୯ । ତତ୍ରୈବ—ପୃ ୨୮୯ ।

ଲୋଭରେ ବଶବର୍ତ୍ତୀ ହୋଇ କିଛି ଅର୍ଥ ଲାଭ କରିବା ପାଇଁ ହେଉ ବା ପ୍ରଣୟୀ ଯୁଗଳଙ୍କର ଅନ୍ତରର କଥା ବୁଝି ତାଙ୍କୁ ମିଳିତ କରିବା ପାଇଁ ହେଉ, ସେ କ'ଣ କେବଳ ଦୂତିକା କାର୍ଯ୍ୟପାଇଁ ସୃଷ୍ଟ ? ସେ ମାଲୁଣୀ ହେଲେ ବି ତା'ର ମଧ୍ୟ ମନ ଅଛି । ଅନୁଭବ କରିବା ଶକ୍ତି ଅଛି । ସେ ନାରୀ, ପୁରୁଷର ସ୍ପର୍ଶ ତା'ର କାମ୍ୟ । 'ମନୋହର ଫାସିଆର' ପାଲାର ଅନୁକରଣରେ ଲିଖିତ ପ୍ରତାପରାୟଙ୍କ 'ଶଶିସେଣା'ରେ ଏତାଦୃଶ ବର୍ଣ୍ଣନା ଦେଖିବାକୁ ମିଳେ । ଅଭିମନ୍ୟୁ ପୁରୁଷ, ପୁଣି ଯୁବକ ଓ କନ୍ଦର୍ପ ତୁଲ୍ୟ ସୁନ୍ଦର । ଶଶିସେଣା ପାଇଁ ଫୁଲ କିଣିବାକୁ ଯାଇଁ ପହଞ୍ଚିଛି ଜ୍ଞାନନ୍ଦା ମାଲୁଣୀ ଘରେ । ପ୍ରଥମ ଦର୍ଶନରେ ଜ୍ଞାନନ୍ଦାର ହୃଦୟ ମନ୍ଥିତ ହୋଇଛି । ତେଣୁ ପ୍ରକାଶ୍ୟ ଭାବରେ ସେ ପ୍ରେମ ନିବେଦନ କରିଛି (୨୦) ତା'ର ଆବେଦନ, ହୃଦୟର ଅଭିବ୍ୟକ୍ତି ବ୍ୟର୍ଥ ହୋଇନି । ପ୍ରଥମ ଦର୍ଶନରୁ 'କଟାକ୍ଷେ କୁମର ମନ ମୋହିଲା ବାଳୀ' ; କିନ୍ତୁ କେବଳ କୁମରର ମନକୁ ଦୋହଲାଇ ଦେବାରେ ତା'ର ତୃପ୍ତି ନାହିଁ । ସେ ଚାହେଁ ସମ୍ପୂର୍ଣ୍ଣ ଅଧିକାର, ଯେପରି ସେ ହୋଇପାରିବ ପୁରୁଷର ତା'ର । କେବେହେଲେ ଫେରି ପାରିବ ନାହିଁ ଶଶିସେଣା ପାଖକୁ । ସମସ୍ତ ବୁଦ୍ଧି, କୌଶଳ ପ୍ରୟୋଗ କରି ତାକୁ କାର୍ଯ୍ୟ ହାସଲ କରିବାକୁ ହିଁ ହେବ । ସେଥିପାଇଁ ତା' ହାତରେ ଅଛି ତନ୍ତ୍ର ଶାସ୍ତ୍ରର ବଶୀକରଣ ବିଦ୍ୟା । ହାତରେ ମନ୍ତ୍ରା ଫୁଲ ଦେଇ ସେ ତାକୁ ମେଣ୍ଢା କରିଦେଇ ପାରେ (୨୧) । ତା'ପରେ କାମନା ଚରିତାର୍ଥ କରିବା ପାଇଁ ଆଉ ବାଧା ବା ଅଛି କ'ଣ ? ସେ ତାକୁ ଦିନସାରା ମେଣ୍ଢା କରି ବାନ୍ଧି ରଖେ, ରାତିକୁ କରେ ଭେଣ୍ଡା । ମାଲୁଣୀମାନେ ଜଡ଼ି-ମନ୍ତ୍ରର ଓ କମିଆଁ ଜାଣିଥିବା ବିଷୟ ଅନେକ ଲୋକଙ୍କଠାରୁ ଆମେ ପାଇଥାଉଁ । ଜ୍ଞାନଦେଇ ସିନା ମଣିଷକୁ ମେଣ୍ଢା କରିଛି, କିନ୍ତୁ ମଣିଷକୁ ପଥର

---

୨୦ । ନବୀନ ସୁନ୍ଦର କାୟେ ହରଣ୍ଟ ମଦନ ପ୍ରାୟେ
ଦେଖି ନବ ତରୁଣୀଙ୍କ ହୃଦୟ ଦହି ।
( ପ୍ରତାପ ରାୟ—ଶଶିସେଣା ଛାନ୍ଦ ୮।୭ ପଦ )

୨୧ । କରେ ଦେଲା କୁସୁମ ମନ୍ତ୍ରା,
ସୁଘନେ କୁମରମଣି ହୋଇଲା ମେଣ୍ଢା ।
( ଶଶିସେଣା ଛାନ୍ଦ ୮।୯ ପଦ )

କଣ୍ଠେଦେଇ ପାରିବାର ଦୃଷ୍ଟାନ୍ତ ମଧ୍ୟ ରହିଛି । ଲୋକ ଗଳ୍ପର 'ସୁନା ଝରଣା' କଥା ଏହାର ଏକ ନିର୍ଭୁଲ ଉଦାହରଣ ।

ମାଲୁଣୀ କହିଲେ ସାଧାରଣତଃ ଦୂତିକା ଧାରଣାହିଁ ମନକୁ ଆସେ । ଏପରିକି ମାଲୁଣୀ ଦୂତୀର ଏକ ସାଙ୍କେତିକ ଅର୍ଥରେ ବ୍ୟବହୃତ ହୁଏ । ଗ୍ରାମ୍ୟ ଭାଷାରେ ଦୂତିକା କାର୍ଯ୍ୟ କରୁଥିବା ସ୍ତ୍ରୀ ଲୋକଙ୍କୁ ବ୍ୟଙ୍ଗାର୍ଥରେ ମାଲୁଣୀ ବୋଲି କହିବାର ଶୁଣାଯାଏ । କିନ୍ତୁ ସାହିତ୍ୟିକ ଆଲୋଚନାରୁ ଜଣାଯାଏ ଯେ ମାଲୁଣୀ କେବଳ ସାଧାରଣ ଦୂତିକା ନୁହେଁ । ସେ ପ୍ରଣୟୀଙ୍କର ଅନ୍ତରଙ୍ଗା ସଖୀ, ଜନନୀ ସ୍ଥାନୀୟା, ସାହୁକାର, ମିଳନର ଗୁରୁ ଏବଂ ପ୍ରଣୟର ଅଂଶୀଦାର । ବିବିଧ ତା'ର ବ୍ୟକ୍ତିତ୍ୱ । କବି ଦୃଷ୍ଟିରେ ସେ ପ୍ରଣୟ ଦୂତୀ, ପ୍ରଣୟ ପ୍ରସଙ୍ଗର ଏକ ଅବିଚ୍ଛେଦ୍ୟ ଅଙ୍ଗ ।

ଝଙ୍କାର,
ଫେବୃଆରି, ୧୯୭୨

## ଶନ୍ତେଇ ସ୍ୱାଇଁ : ଏକ ଆତ୍ମସମୀକ୍ଷା

ଧୋବ ମତେ ଉପହାସ କରୁଛୁ ? ହଁ, ହଁ, ନିଶ୍ଚୟ ଉପହାସ କରୁଛୁ । ହା' ନହେଲେ ମୁଁ ଯେତେବେଳେ ତାକୁ ବାଧ୍ୟ କରୁଥିଲି ବନ୍ଦେଇକୁ ପୋଷ୍ୟ-ପୁତ୍ର କରିବାକୁ ସେ ମୁହଁଖୋଲି ମନା ନ କଲେ ବି ସ୍ୱୀକୃତି ଦେଇନ । ତା'ର ଖାପଛଡ଼ା ଭାବ ବେଶ୍ ଜଣେଇ ଦେଇଛି ଯେ, ସେ ବନ୍ଦେଇକୁ ପୁଅ କରିବାକୁ ଚାହେଁନ । କିନ୍ତୁ ଆଜି ? କେବଳ ଆଜି ନୁହେଁତ, ତା' ବୋଉ ମଲାପରେ ବାରମ୍ବାର ସେ ପୋଷ୍ୟପୁତ୍ର କଥା ଉଚ୍ଚାରଣ କରୁଛି କାହିଁକି ? ସେ ଉପହାସ କରୁଛି, ପ୍ରତିଶୋଧ ନେଉଛି । ନ ନେବ ବା କାହିଁକି ? ଜଣେ ହେଲେ ତ ମୋ' ଠାରୁ ସ୍ନେହ, ମମତା ସେ ପାଇନ । ମୁଁ ତାର ଜନ୍ମକର୍ତ୍ତା ହୋଇପାରେ । କିନ୍ତୁ ପିତାର ଆସନ ଦାବୀ କରିବାର ସାହାସ ମୋର ନାହିଁ । ବରଂ ନିଧେଇ ତା'ର ବାପ ନ ହେଲେ ବି, ନିଜର ଦାଦା ନହେଲେ ବି ପିତୃ ସୁଲଭ ବାତ୍ସଲ୍ୟ ମମତା ଧୋବା ତାରିଠାରୁ ପାଇ ଆସିଛି । ଆଉ ସେଇଥିପାଇଁ ଆଜି ଧୋବା ରୋଗଶଯ୍ୟାରେ ବାରମ୍ବାର ତାଙ୍କୁ ଖୋଜୁଛି । ହୁଏତ ନିଧେଇ ଆସିଲେ ପୁଣି ସେଇ ପୋଷ୍ୟପୁତ୍ର କଥା ସେ ବାଢ଼ିବ । 'କିନ୍ତୁ ତା' କୁ ମୁଁ କଅଁଆଉଣୁ କେବେ କରେଇ ଦେବିନ । ଧୋବା ବୋଉର ମୃତ୍ୟୁ କାଳୀନ ଦୃଶ୍ୟ ବାରମ୍ବାର ମୋର ମନେ ପଡ଼ୁଛି । ପ୍ରାଣ ଯିବା ପର୍ଯ୍ୟନ୍ତ, ଚେତନା ଥିବା ପର୍ଯ୍ୟନ୍ତ ସେଇ ଗୋଟିଏ ଅନୁରୋଧ । ଧୋବା ପୋଷ୍ୟପୁତ୍ର କରିବନାହିଁ, ଆଉ ସନେଇସହିତ ତା'ର ଜୀବନକୁ ଏକାଠି କରିବାକୁ ହେବ । ସେଇଆ ହିଁ ମୁଁ କରିବି, ସେ ଯାହା ବୁଝିଥିଲେ ଠିକ୍ ବୁଝିଥିଲେ । ପଡ଼ଶା ଘର ବାଡ଼ ବଗିଚାରୁ କିଏ ଆରୁ ଉଙ୍କିଟାଏ ଏପଟକୁ ମାଡ଼ିଆସି ଫଳ ଅଜାଡ଼ି ଦେଇଗଲେ ବି କିଛି ମୂଲ୍ୟ ନାହିଁ । ନିଜ ହାତରେ ରୋପିଥିବା ଗଛରେ ଗୋଟିଏ କଷି ଦେଖିଲେ ତୃପ୍ତି । ବନ୍ଦେଇ ମଧ୍ୟ ମୋର ନିଜର ନୁହେଁ । ଧୋବାବୋଉ ଠିକ ବୁଝିଥିଲେ ଧୋବାର ମନକଥା, ଜନ୍ମଦାତ୍ରୀ ସେ । ତାଙ୍କ ପାଖରେ ପିଲାର ମନକଥା ଅଛପା ରହନ୍ତା ବା କିପରି ? ତାଙ୍କ

ଜୀବନର ଶେଷ ମୁହୂର୍ତ୍ତ ମୋ ପରିବର୍ତ୍ତନର ଅପୂର୍ବମାରମ୍ଭ । ଆହା ଦୁଃଖ ଲାଗେ ଜୀବିତାବସ୍ଥାରେ ମୋ ପରିବର୍ତ୍ତନର ଟିକିଏ ଆଭାସ ଯଦି ପାଇଥାନ୍ତେ କେତେ ଖୁସିରେ ସେ ଆଖି ବୁଜି ନଥାନ୍ତେ ସତେ ? ଚିଅପାଇଁ ଜୀବନରେ ବିରାଟ ଏକ ଅବଶୋଷ ନେଇ ସେ ଗଲେ । ମୃତ୍ୟୁ ଶଯ୍ୟାରେ ବାରମ୍ବାର ସାନ୍ତ୍ୱନା ଦେଇଛି. ସତ, ତମେ ବଂଚିରହ ଧୋବୀବୋଉ । ନିଧିପରି ତମକୁ କଥା ଦେଇଛି ଧୋବୀକୁ ସନେଇ ସାଙ୍ଗରେ ବାହା କରିଦେବି । ସେ କ'ଣ ବିଶ୍ୱାସ କରିଥିବେ ନିଧିକୁ ? ନିଧିଆ ହାଗିତ ଶାଗ ସିଝେନି । ସେ ମୋ କଥାରେ ଗୁରୁତ୍ୱ ଦେଇ ଯେତେ ଉତ୍ସାହରେ ସେଇ କଥା କହିଲେ ବି ଧୋବୀବୋଉ କେବେ ବିଶ୍ୱାସ କରିନଥିବେ । ଆଉ ମୋ କଥା ଉପରେ କାହିଁକି ବା ସେ ଆସ୍ଥା ରଖିବେ ? ହଜେତ ତାଙ୍କର କୌଣସି କଥା ମୁଁ ରଖିନି । ହାତଧରି ଘରକୁ ଆଣିଲି ଦିନରୁ ତାଙ୍କର ଯେ ଏ ଘରେ କୌଣସି ଗୁରୁତ୍ୱ ଅଛି ଏକଥା କେବେ ଅନୁଭବ କରିନି । ପରିବାରର ମଙ୍ଗଳ ପାଇଁ କୌଣସି ଯୋଜନାରେ ସ୍ୱାମୀ ସ୍ତ୍ରୀ ଦୁହେଁ ବସି କିଛି ଯେ ଆଲୋଚନା କରିଛୁଁ ବା ତାଙ୍କର ପରାମର୍ଶ ମୁଁ ଲୋଡ଼ିଛି ମୋର ମନେ ପଡ଼ୁନି । ବିଗୁଣି ସଂସାରର ସବୁ ଦାୟିତ୍ୱ ମୁଣ୍ଡରେ ଲଦି, ଜୀବନର ସବୁ ଦୁଃଖକୁ ମନରେ ରଖି ପାଟି ବନ୍ଦକରି ଚାଲି ଆସିଛନ୍ତି । ମୋର ଏକବାଗିଆ ଢ଼ଙ୍ଗ ସେ ବେଶ୍ ବୁଝିଥିଲେ । ସେଇଥିପାଇଁ ବୋଧହୁଏ କୌଣସି କଥାରେ ଓଜର ଆପତ୍ତି ସେ କରିନାହାନ୍ତି । ସେ କେମିତି ବା ବିଶ୍ୱାସ କରିଥିବେ ଯେ ମୁଁ ମୋ ଜୀବନର ସବୁକିଛି ତ୍ୟାଗକରି ଧୋବୀକୁ ସୁଖି କରିବାକୁ ସତରେ ଚେଷ୍ଟା କରିବି । ମଲାବେଳକୁ ଯାହା ମୁଁ ଧୋବୀ ସମ୍ବନ୍ଧରେ ତାଙ୍କୁ କହିଥିଲି, ସେ ହୁଏତ ଭାବିଥିବେ କେବଳ ଗୋଟାଏ ଫାଙ୍କା ଆଶ୍ୱାସନା, ମନରଖା କଥା, ବଂଚି ରହିବାକୁ ରୋଗୀ ମନରେ ଗୋଟାଏ ଆକାଂକ୍ଷା ସୃଷ୍ଟି କରିବା ।

ନା, ନା, ସେ ମନରଖା କଥା ହୋଇ ନପାରେ । ତା' ହୋଇଥିଲେ ମୁଁ, ଚନ୍ଦ୍ରେଇ ସୋଇଁ ଗୋଟାଏ ଦୁର୍ଭିକ୍ଷ ଫେରନ୍ତା ଧରମଲ୍ ଗରିବ ମୂଲିଆ ସନେଇଁ ପାଖରେ ମୋର, ସମସ୍ତ ଗର୍ବ, ଦମ୍ଭ ଅଭିମାନକୁ ଅକାତରରେ ଅଜାଡ଼ି ଦେଇ ନଥାନ୍ତି । ଓଃ, ସେଦିନ କ'ଣ ନ ଘଟିଲା ସତେ । ଯାହା ମୁଁ ସନେଇଙ୍କୁ କହିଲି ଖୋଲି କହିଲି କାନ ଶୁଣିଥିଲେ ବି ମନ ବିଶ୍ୱାସ କରିପାରୁନି । ଯେଉଁ ସନେଇକୁ ଦେଖିଲେ ଜହ୍ନା ପିମ୍ପୁଡ଼ି ପରି ଅଯଥା ଟାରେ ଦଳିଦେବାକୁ

ମନଡାକେ ତାକୁ ଦେଖି ମୁଁ ଉଚ୍ଚ ପିଣ୍ଡାରୁ ଓହ୍ଲାଇ ପଡ଼ିଥିଲି । ଅତି ଚଞ୍ଚଳାରେ ବାପଧନ କହି ହାତ ଧରି ଘରକୁ ଡାକିଥିଲି । ମୋ ଉପାର୍ଜିତ ସମ୍ପତ୍ତିର ଉଇଲ୍ କାଗଜ କେତେଖଣ୍ଡି ଦେବାପାଇଁ ନିଜର ଶୋଇଲା ଘର ପଲଙ୍କ ଉପରେ ଆଣି ବସାଇଲି । ମୁଁ ଜାଣେ ସନିଆଁ ଯୁବକ, ତା ମନରେ ମଧ୍ୟ ପ୍ରତିଶୋଧର ଅଗ୍ନି ଜଳୁଥିବ । ତାକୁ ନିର୍ବାପିତ ନକଲେ ସେ କେବେ ହେଁ ମୋରଦାନ ଗ୍ରହଣ କରିବ ନାହିଁ । ସେଇଥି ପାଇଁ ତ ମୁଁ ଚନ୍ଦ୍ରେଇଁ ସୋଇଁ ଯିଏ ସାମାଜିକ ପ୍ରତିଷ୍ଠା, ସମ୍ମାନ ଓ ସମ୍ପତ୍ତି ଯୋଗୁଁ ଲୋକ ଚକ୍ଷୁରେ ଖୁବ୍ ବଡ଼, ମୁଁ ମୋର ବଡ ପଣକୁ ଛାଡ଼ିଲି । ଖୁବ୍ ଗୋପନରେ ଚାରିକାନ୍ଥ ଭିତରେ, ଲୋକ ଚକ୍ଷୁର ଅଗୋଚରରେ ହେଲେ ବି ଜୀବନର ପ୍ରଥମଥର ପାଇଁ ମୁଁ ମୋର ଗର୍ବିତ ମନକୁ ଅନ୍ୟ ପାଖରେ ନୁଆଁଇଲି । ହାତ ଧରିଲି, ତୁଣ୍ଡ ଖୋଲି କ୍ଷମା ଦେ ବୋଲି କହି ଶରଣ ପଶିଲି । ତଥାପି, ତଥାପି ସନେଇଁ ଦାନ ଗ୍ରହଣ କଲାନି । କ'ଣ ବା ଅଧିକା ସେ ଚାହୁଁଥିଲା ? ଅଧିକା କ'ଣ ବା ଆଉ ଚନ୍ଦ୍ରେଇ ସୋଇଁ କରିପାରି ଥାନ୍ତା ? ତା' ପାଖରେ କରିଥିବା ଗୋଟି ଗୋଟି ଅନ୍ୟାୟ, ଅବିଚାରକୁ ମୁଁ ତ ମାନି ନେଇ ସାରିଛି ।

ନିଜ ମାପ କାଠିରେ ମୁଁ ଦୁନିଆକୁ ମାପିଛି । ସେଇଥି ପାଇଁ ସବୁବେଳେ ଭାବିଛି ସମସ୍ତେ ଟଙ୍କାର ଚାକର । ଧାରଣା ଥିଲା ଲକ୍ଷ ଲକ୍ଷ ଟଙ୍କାର ମୋହ ସନିଆଁ ଛାଡ଼ି ପାରିବ ନାହିଁ । ସେ ଧାରଣା ମୋର ତୁଟିଲା । ଅବଶ୍ୟ ସନିଆର ଯେ ସେ ପ୍ରକାର ମୋହ ନାହିଁ ତାର ପ୍ରମାଣ ମୁଁ ବାରମ୍ବାର ପାଇଛି । ଗାଁର ଯାନ ଯାତ୍ରାରେ ଚାନ୍ଦା ଭେଦା ସେ ଚାରିଅଣା ଜାଗାରେ ଟଙ୍କାଏ ଦେଇଛି । ଜନ୍ତାଳ ଭୋଜିର ସମସ୍ତ ଖର୍ଚ୍ଚ ହସି ହସି ସେ ନିଜେଇ ବହନ କରିଛି । ଯେତେବେଳେ ଭାବିଥିଲି ସନିଆ ମୋର ଧନରି ଗର୍ବକୁ ଖଣ୍ଡନ କରୁଛି । କହୁଛି ତୁ ବଡ଼ ନୁହଁରେ ମୂର୍ଖ । ସେଇ ବ୍ୟକ୍ତି ବଡ ଯାହାର ମନ ବଡ଼ । ଯେଉଁଥି ପାଇଁ ସେ ଟଙ୍କା ଖର୍ଚ୍ଚ କରୁ ପଛକେ ମୁଁ ସେଇ ଗୋଟିଏ ଦୃଷ୍ଟିରୁ ବିଚାର କରିଛି । ଭାବିଛି, ସେ ପ୍ରତିଶୋଧ ନେଉଛି । ସେଥିପାଇଁ ତାର ଏଭାବ ଦେଖି ଖୁସିହୋଇ ପାରିନି । ଲୋକଙ୍କର ଆନନ୍ଦ କୋଳାହଳ ମୋ ମନକୁ ଉଲ୍ଲସିତ ନକରି ବିଷାକ୍ତ କରିଛି । ସେଇଟା କ'ଣ ମୋର ଗୁରୁତର ଦୋଷ ? ଯେକେହି ହେଲେ ବି ଈର୍ଷାନ୍ୱିତ ହେବ । ମୁଁ ଯେଉଁଠି ଦୁଇଟଙ୍କା ଚାନ୍ଦା ଦେଇଛି ସେ କ୍ଷେତ୍ରରେ ସନିଆଁ ଜନ୍ତାଳର ସମସ୍ତ ଖର୍ଚ୍ଚ ହାତକୁ ନେଇଛି ? ଚନ୍ଦ୍ରେଇ ସୋଇଁ ତାକୁ କେବେ ହେଁ ସହଜ ଭାବରେ ଗ୍ରହଣ କରି ନପାରେ । ଛଳନା

ହେଉ ପଛକେ ସନଆଁର ଦାନ ମୁଁ ଗ୍ରହଣ କରୁଛି । ଗାଁର ସବୁଲୋକେ ଯେତେବେଳେ ମୋ ହାତ ମୁଠାରେ ମୁଁ ଇଚ୍ଛା କରୁଥିଲେ ସନଆଁର ଗୋଟିଏ ପଇସାବ ଠାକୁର କାମରେ ଲାଗି ନଥାନ୍ତା । କିନ୍ତୁ ତାର କି ଆସ୍ପର୍ଦ୍ଧା ସତେ, ଶେଷ ପର୍ଯ୍ୟନ୍ତ ବି ସେ ମୋ ଦାନ ଗ୍ରହଣ କଲାନି । କ'ଣ ହୋଇପାରେ ତାର କାରଣ ? ବନ୍ଧନ ହୃଷ୍ଟ ବୁଚ ବଗୁର କରୁଛି । ନହେଲେ ବା, ତା'ର ଟଙ୍କାର ମୋହ ନାହିଁ; କିନ୍ତୁ ଧୋବାର ମୋହ ? ସେ କଥା କ'ଣ ସେ ସ୍ୱୀକାର କରିବ ନାହିଁ ? ଧୋବା ଆଉ ସନଆଁ, ଉଭୟଙ୍କର ଉଭୟଙ୍କ ପ୍ରତି ଯେ ମମତା ଅଛି, ଏକଥା କିଏ ବା ଅସ୍ୱୀକାର କରିବ ? ସେଥିପାଇଁ ଖୋଲା ଖୋଲି ଭାବରେ ମୁଁ ତା'ଠାରେ ପ୍ରକାଶ କରୁଛି ଧୋବୀ ବୋଉଙ୍କର ଅନ୍ତିମ ଇଚ୍ଛା । ତା'ର ଅନିଚ୍ଛା ଭାବ ଦେଖି ମୁହଁ ଖୋଲି କହିଲି ଯୁ ମୋର ପୋଡଲ ଜଳିଲା ପ୍ରାଣରେ ଆଉ ଆଘାତ ଦେ'ନା, ତୁମେ ଦୁହେଁ ପରସ୍ପର ଉପରେ ଅଭିମାନ କରି ଆତ୍ମହତ୍ୟା କର ନାହିଁରେ ସନେଇ । କିନ୍ତୁ ସନଆଁ ଧୋବାର ପ୍ରଲୋଭନକୁ ଏଡ଼େଇ ପାରିଲା କିପରି ? ଲକ୍ଷ୍ୟପତି ଚନ୍ଦ୍ରେଇ ସୋଇଁର ଜାମାତା ହେବାକୁ ? ତା'ର ଉତ୍ତରାଧିକାରୀ ହେବାକୁ ସେ କାକୁତି ମିନତି ହୋଇ ଗୋଡ଼ତଳେ ପଡ଼ି ମନାକରି ଦେଇ ପାରିଲା କେମିତି ?

ସନଆଁ ଲକ୍ଷପତି ଚନ୍ଦ୍ରେଇ ସୋଇଁର ଜୋଇଁ ବା ଉତ୍ତରାଧିକାରୀ ନୁହେ । ସେ ବନେଇ ପରିଡ଼ାର ଯୋଗ୍ୟ ଦାୟାଦ । ବାପାର ଅପୂରଣ ଇଚ୍ଛାରେ ପର୍ଯ୍ୟବସିତ ହେଇଛି ସନଆଁ । ଯେଉଁ ଦିନ ଏଇ ପ୍ରହରାଜେ ମୋ' ଝିଅ ଧୋବାର ପ୍ରସ୍ତାବ ସନଆଁ ପାଇଁ ନେଇ ଯାଇଥିଲେ ବନେଇ ପରିଡ଼ାଙ୍କ ପାଖକୁ, ସେ ନାକଟେକ ନଶ ଫୁଲାଇ ମନା କରିଥିଲେ । ଆଜି ପୁଣି ଧୋବାର ପ୍ରସ୍ତାବ ସେଇ ସନଆଁ ସହିତ । ବନେଇ ପରିଡ଼ା ନାହିଁ, ସନେଇ ନେଇଛି ପ୍ରତିଶୋଧ । ତା'ଠାରୁ ଆହୁରି ଅଧିକ, ଆହୁରି ନିର୍ମମ । ତଥାପି କେମିତି ତା' ମନର ଅବଶୋଷ ମେଣ୍ଟିଲା ନାହିଁ ? ଯେମିତି ମେଣ୍ଟି ନଥିଲା ମୋର । ବନେଇ ପରିଡ଼ା କୁଆପିଲା ଧରି ଛତରକୁ ବାହାରି ଗଲାବେଳେ ମୋ ମନରେ କି ତୃପ୍ତି । ଆଜି ସ୍ପଷ୍ଟ ମନେ ପଡ଼ୁଛି ମୁଁ କହିଥିଲି, "ଯାହା ସମସ୍ତ ପଡ଼ିଲାଣି କେଡ଼େ କେଡ଼େ ଘରର ପିଲାଏ ତ କୁଆଡେ ଗଲେଣି, ତମେ ଆମେ ତ ଛାର ।" ବନେଇ ପରିଡ଼ାକୁ ଆକ୍ଷେପ କରିବା ଥିଲା ମୁଖ୍ୟ ଲକ୍ଷ୍ୟ । ତାଙ୍କର ଜାତିର ଗର୍ବକୁ ଧୂଳିସାତ୍ କରିଥିଲା ମୋ ଧନର ଗର୍ବ ମାଧ୍ୟମରେ । ଏ ଜଗତରେ କିଏ

ନକରେ ଗର୍ବ ? ସଂସାରୀ ହୋଇ ପ୍ରତ୍ୟେକଙ୍କର କିଛି ନା କିଛି ଅହଂ ଅଛି । ଧନ, ଜନ, ଶକ୍ତି, ସାମର୍ଥ୍ୟ, ସୌନ୍ଦର୍ଯ୍ୟ ଯାହାର ଯେଉଁଠି ଅଛି । ସେଥିପାଇଁ ମୁଁ ଏମିତି ଗୁରୁତର ଅପରାଧ ନୁହେଁ ଯେଉଁଥିପାଇଁ ମୋ ମତେ ଚରମ ଶାସ୍ତି ମିଳିବ, କିନ୍ତୁ ସେତିକି ତ ନୁହେଁ, ବାରମ୍ବାର ମୁଁ ସନଆଁକୁ ଆଘାତ କରିଛି । ସବୁ ସ୍ଥଳରେ ରହିଛି ସେଇ ଧନର ବଡ଼ିମା । ସନଆଁ ଦୁର୍ଭିକ୍ଷରୁ ଫେରିଲା ପରେ ତାକୁ କୋଠିଆକରି ରଖିବାର ଯେଉଁ ପ୍ରୟାସ, ତା' ମୂଳରେ କ'ଣ ସେଇ ପ୍ରତିଶୋଧର ପିପାସା ନଥିଲା ? ସେଥିପାଇଁ ସେଦିନ ଉଚ୍ଚପିଣ୍ଡାରେ ବସି ଆଶ୍ରୟଦାତା ଦୃଷ୍ଟିରେ ତାକୁ ଦେଖିଥିଲି । ଗର୍ବରେ କହିଥିଲି, ଖଟି-ଥିଲେ ଅସଂଖ୍ୟ ହାତ କାମ କରିବାକୁ ମିଳିବ ।

ସେ ସବୁର ପରାଭବ ଆଜି ଭୋଗୁଛି । କେବେ ଏହାର ଶେଷ ? ସମସ୍ତେ ମତେ ଶାସ୍ତି ଦେଇଗଲେ, ହାତ ଧରିଲା ସ୍ତ୍ରୀଠାରୁ ଜନ୍ମକଲା ଝିଅ ପର୍ଯ୍ୟନ୍ତ । ଆଜି ସନଆଁ ବାହାରର ଗୋଟାଏ ଲୋକ ହୋଇ ଏହାର ସୁଯୋଗ ନନେବ କାହିଁକି ? କିନ୍ତୁ ଗୋଟିଏ କଥା ମତେ ଦୁର୍ବୋଧ ମନେ ହେଉଛି— ଧୋବୀର ପ୍ରଲୋଭନକୁ ସେ ଏଡ଼ାଇ ପାରିଲା କେମିତି ? ଆଜିକାଲିକା ପିଲା ଯେ କ'ଣ କରନ୍ତି, ସେଇମାନେ ବୁଝନ୍ତି । ଫାଙ୍କା ଆଦର୍ଶର ପଛରେ ଧାଇଁ ବାସ୍ତବକୁ ହରାଇ ବସନ୍ତି । ବାସ୍ତବ କଠୋର ସତ । ଆଦର୍ଶ ଝାପ୍‌ସା, ଗୋଟାଏ ଫାଙ୍କା ନାଁ । ଧୋବୀକୁ ଗ୍ରହଣ ନକରିବା ମୂଳରେ କୌଣସି ଆଦର୍ଶ ଥିଲାପରି ମୋର ହୃଦ୍‌ବୋଧ ହେଉନି । ସାମ୍ୟବାଦ ଗଢ଼ିବା ପାଇଁ ଯେଉଁମାନଙ୍କୁ ଆଶ୍ରୟ ଦେଇଛି, ସେମାନଙ୍କର ସୁବ୍ୟବସ୍ଥା କରିଦେବା ପାଇଁ ମୁଁ ତ ପ୍ରତିଶ୍ରୁତି ଦେଇସାରିଛି । ତଥାପି ସେ ରାଜି ହେଲାନାହିଁ କାହିଁକି ? ଧୋବୀପ୍ରତି ତାର ଆଉ କ'ଣ ମମତା ନାହିଁ ? 'ଏତିକି ମୁଁ ଯେମିତି ସହିପାରୁନି, ତାହେଲେ ମୁଁ କ'ଣ କରିବ ? ଧୋବୀପ୍ରତି ତା'ର ସ୍ନେହନାହିଁ, ଏକଥା ହୋଇନପାରେ । ପରସ୍ପର ପ୍ରତି ଯେ ଯଥେଷ୍ଟ ସ୍ନେହ ମମତା ଅଛି ତା'ର ପ୍ରମାଣ ବହୁତ ଆଗରୁ ମିଳି ସାରିଛି । ମୋର କୁଟିଳ ବୁଦ୍ଧି ହୋଇପାରେ । କିନ୍ତୁ ବୁଦ୍ଧି ନାହିଁ ଏକଥା କୌଣସି ବ୍ୟକ୍ତି କହିବାକୁ ସାହାସ କରିବେ ନାହିଁ । ଯେବେ ଯେଉଁ କ୍ଷେତ୍ରରେ ମୁଁ ଯାହାକୁ ସନ୍ଦେହ କରିଛି, ସେଠି କିଛି ନା କିଛି ସତ୍ୟତା ମିଳିଛି । ଏଇ ଧୋବୀ ବହୁ ଦିନଧରି ଦୁର୍ଗାପୁରରେ ରହିବାରୁ ମୋ ମନରେ ଦେଖା ଦେଇଥିଲା ସନ୍ଦେହର ଛାଇ । ଶେଷରେ ସବୁ କଥାର ଜଣା ପଡ଼ିଲା । ସନେଇ ସାନକୀ ଅମାବାସ୍ୟାରେ ଧୋବୀ ପାଖକୁ ଆସିଛି । ରାତିରେ ରହି ସକାଳେ

ଯାଇଛୁ ଆଜ ଧୋବା ? ସେ ମଧ କାଙ୍ଗାଳ ସନେଇକୁ ଅନ୍ନ, ଧନ, ମନ ସବୁ ଦେଇ ବଞ୍ଚାଇଛୁ । ମାଳକଣ୍ଠଙ୍କ ପାଖକୁ ଯିବାର ଛଳନାରେ ସନେଇକୁ ଭେଟିଛି । ସବୁ ସେଇଥିପାଇଁ ତ ଗୁପ୍ତରେ ତାକୁ ନଜଣାଇ ତା' ଟ୍ରଙ୍କ୍ରୁ ସବୁ ଟଙ୍କା, ସୁନା ନେଇ ଆସିଥିଲି ।

କନ୍ତୁ ସବୁ ଜାଣି ସୁଦ୍ଧା ମୁଁ ବହୁତ ସମୟରେ ଧୋବାପ୍ରତି ଖୁବ୍ ନିଷ୍ଠୁର ହୋଇଛି । ସାବତ୍ରୀ ଅମାବାସ୍ୟା ପରଦିନ ସନେଇ ଆସିଥିବାର ଖବର ଦୁର୍ଗାପୁରରେ ପାଇ ମୁଁ ରାଗରେ ଜଳିଯାଇଥିଲି । ଧୋବାକୁ ଜର ହୋଇଥିବା ଖବର ଶୁଣି ମୋ ମନରେ ଦୟା ଆସିନି; ବରଂ ଆସିଛି ସନ୍ଦେହ । ରୋଗ ଶଯ୍ୟାରେ ଯନ୍ତ୍ରଣାରେ ଛଟପଟ ହେଉଥିବା ଜାଣି ସୁଦ୍ଧା ପ୍ରଥମେ ଭାବିଛି ସେ ବିଷ୍ଣୁପୁର ନ ଯିବାର ଏ ଏକ ଉତ୍କୃଷ୍ଟ ଛଳନା । ବାପ ହୋଇ ଝିଅ ଦେହର ବ୍ୟଥା, ମନର କଥା କେବେହେଲେ ଚିହ୍ନିନି । କନ୍ତୁ ସେତ ମତେ ସନ୍ଦେହ କରିନ । ତା' ବୋଉର ଦେହ ଖରାପ ହୋଇଥିବା ନିଛକ ମିଛକଥା ହେଲେ ବି କେତେ ସହଜରେ ସେ ବିଶ୍ୱାସ କରି ନେଇଛୁ ତା' ନିଷ୍ଠୁର ବାପକୁ । ଉଠି ବସିବାର ଶକ୍ତି ନଥିଲେ ବି କହୁଛୁ, ବୋଉର କ'ଣ ହୋଇଛୁ ବାପା ? ମୁଁ ବିଷ୍ଣୁପୁର ଯିବି ।

କେବଳ ଧୋବାପ୍ରତି କ'ଣ ମୁଁ ନିଷ୍ଠୁର ହୋଇଛୁ ? ଧୋବା ବୋଉ ପ୍ରତି ଆହୁରି ଅଧିକ ନିର୍ମମ ମୁଁ ହୋଇଛୁ । ତାକୁ ଘରର ଗୋଟିଏ ପ୍ରାଣୀ ବୋଲି କେବେ ଗ୍ରହଣ କରିନ । ନିତାନ୍ତ ଅସହ୍ୟ ହେବାରୁ, ଧୋବାର ଶାରୀରିକ, ମାନସିକ ଅବସ୍ଥା ଦିନକୁ ଦିନ ଖରାପ ହେବାରୁ ସେ ମୁହଁ ଖୋଲିଛନ୍ତି । କନ୍ତୁ ମୁଁ ତାକୁ କୌଣସି କଥା କହିବାର ସୁଯୋଗଇଂ ଦେଉନାହିଁ । ବରଂ ତାଚ୍ଛଲ୍ୟ କରି, ଉପହାସ କରି କହିବାର ଦାବୀକୁ ଅପହରଣ କରିଛି । ଟିମିର ଦୃଷ୍ଟାନ୍ତ ସେ ଦେଲାବେଳେ କେତେ ତେଜରେ ମୁଁ କହିଥିଲି, "କାହା ସାଙ୍ଗରେ କାହାକୁ ତୁମେ ତୁଳନା କରୁଛ ଧୋବାଙ୍କ ବୋଉ ? ବାମ ଓଝା ଝିଅ ଟିମି ଆଉ ମୋ ଝିଅ ଧୋବା ? ଧୋବାକୁ ଅଜଥରେ ବାହାକରି ସୋଇଁ ବଂଶରେ କଳଙ୍କ ବୋଳିବି ନାହିଁ ।" କନ୍ତୁ ଏଇ ସୋଇଁ ବଂଶରେ ତ ପୁଣି ଭ୍ରମର ପ୍ରତ୍ୟୁଷ ନିଜେ କେଉଁ ଜଣେ କେଉଟୁଣୀକୁ ବିବାହ କରିଥିଲେ ବୋଲି ବନେଇ ପଣ୍ଡା ଧୋବାଙ୍କୁ ବୋହୂ କରି ନେବାକୁ ମନା କଲେ ? ଆଜ ତ ପୁଣି ମୁଁ ନିଜେ ଧୋବାର ପୁନର୍ବିବାହ ପାଇଁ ସବୁ ଛାଡ଼ ଏକ ଲକ୍ଷ୍ୟରେ ଲାଗିଛୁ । କନ୍ତୁ

ସେଦିନ କାହିଁକି ମନା କରିଥିଲି ? ସେଦିନ ମୋ ମୁହଁରୁ କେବଳ ହଁ ପଦଟିଏ ବାହାରିଥିଲେ ସନେଇ ହୁଏତ ମନା କରି ନଥାନ୍ତା । ଧୋବା, ଧୋବାବୋଉ ଚିନ୍ତାରେ ଦଡ଼ି ମଡ଼ି ମରି ନଥାନ୍ତେ ; ଆଜି ଧୋବା ଅଁଜ କଙ୍କାଳ ରୂପନେଇ ରୋଗ ଶଯ୍ୟାରେ ଅସ୍ଥିର ହେଉ ନଥାନ୍ତା । ଆଜ ଯେ କଳେବଳେ କୌଶଳେ ସନିଆ ହାତରେ ଧୋବାକୁ ଦେବାର ସଂକଳ୍ପ କରିଛୁ ସେତେବେଳେତ ଦୁନିଆ ଦେଖିବ ଚନ୍ଦ୍ରେଇ ସୋଇଁର ଝିଅ ଧୋବା ସନେଇକୁ ବାହାହେବ । ସେଦିନ ଯେଉଁ ଆପତ୍ତି‌ରେ କହୁଥିଲି "ମୋ ଝିଅ ପରଘର ହାଣ୍ଡି ଧୋଇ ପେଟ ପୋଷିବ ?" ସେ ଗର୍ବ ଆଜି ରହିବ କେଉଁଠି ? ଓଃ, ମୁଁ ଭୁଲ୍ ବୁଝିଥିଲି । ସବୁ ଝିଅଙ୍କ ପାଇଁ ସବୁ ଶ୍ୱଶୁର ଘର ସ୍ୱାମୀ ଘର । ନାୟକ ଘରର ବୋହୂ ହେଲେ ଘରଣୀ ହେବ, ଆଉ ସନିଆ ଘରକୁ ଗଲେ ଗୁଲାମଣୀ ହେବ କାହିଁକି ? ସବୁ ଭୁଲ, ସବୁ ମୋର ମନର ଭ୍ରାନ୍ତି । ଆଜ ସବୁ ଦମ୍ଭକୁ ଛାଡ଼ି ସନିଆଁକୁ ହାତମୁଠାକୁ ଆଣିବାକୁ ହେବ । ତା'ପରେ ଧୋବା ହେବ ସନିଆଁର ଘରଣୀ । ଧୋବାର ସଂସାର ହସି ଉଠିବ । ତା' କୋଳକୁ ହସିହସି ଫେରି ଆସିବେ ଧୋବାବୋଉ । ସେଥିପାଇଁ ମାନ ସମ୍ମାନ ଛାଡ଼ିବାକୁ ହେବ । ଆଉ କ'ଣ ବା ବାକି ଅଛି ? ଲୋକେ କ'ଣ ଜାଣି ନାହାନ୍ତି ? ସାବିତ୍ରୀ ଅମାବାସ୍ୟା ଦିନ ଧୋବା ଉପାସ କରିବା, ସନିଆ ଆସିବା, ଲୋକଙ୍କ ମନରେ ପ୍ରଶ୍ନବାଚକତା ସୃଷ୍ଟି କରିଛି । ଲୋକେ ଆଗଠାରୁ ମାରନ୍ତି । ବଡ଼ଲୋକଙ୍କୁ ଉତ୍ତର ନାହିଁ, ସ୍ୱର୍ଗକୁ ନିଶୁଣୀ ନାହିଁ । ସେଥିପାଇଁ ସିନା ଚୁପ୍ ରହିଛନ୍ତି, ନହେଲେ କେଉଁ-କଥା ଅଛପା ? ସନିଆକୁ ନିମନ୍ତ୍ରଣ ଚିଠାଉ ଲେଖିବା ଦିନ ସମସ୍ତେ ଯେମିତି ମନା କରୁଥିଲେ ଆଜି କାହା କଥା ନହୋଇଥିଲେ ଅଁଦୌ ଚିଠାଉ ଲେଖା ହୋଇନଥାନ୍ତା । ପ୍ରଦବାଟିଜ, ମହାନ୍ତିଏ ସମସ୍ତେ ଭ୍ରୂକୁଂଚନ କରିଥିଲେ । ସେମାନେ ସିନା ଟଙ୍କା, ଟଙ୍କା, ସ୍ୱେଚ୍ଛାଚାରର ମୋହରେ କିଛି କରିପାରିଲେ ନାହିଁ କିନ୍ତୁ ମୋ ପ୍ରତି ଯେ ଶ୍ରଦ୍ଧା ଲୋକଙ୍କର ନାହିଁ, ମୁଁ ଜାଣେ । ଏମିତି କଥା ମଧ୍ୟ ମୋ କାନରେ ବାଜିଛି ଯେ, ଲୋକେ ମଙ୍ଗରାଜ ସହିତ ତୁଳନା କରନ୍ତି । କେବଳ ମତେ ନୁହେଁ ତ, ଧୋବା ବୋଉକୁ ମଧ୍ୟ ମଙ୍ଗରାଜର ସ୍ତ୍ରୀ ସାଙ୍ଗରେ ସମାନ କହନ୍ତି । ଶେଷରେ କ'ଣ ମୁଁ ସେଇଆ ? ସେ କେତେ ଲୋକଙ୍କର ଘର ବୁଡ଼ାଇଛି, ଘର ପୋଡ଼ିଛି, ତାର ସୀମା ନାହିଁ । ଆଉ ମୁଁ ? ମୁଁ ବି ତ ସେମିତି ଏତେ ସମ୍ପତ୍ତି ମାଡ଼ି ବସିଥିଲି । ଆଜ ସନେଇ ଦୁର୍ଭିକ୍ଷରୁ

ଫେର୍, ମତେ ଯେତେବେଳେ ତାର ପୈତୃକ ସମ୍ପତ୍ତି ମାଗିଛି, ସେତେବେଳେ ଦେବୋତ୍ତର ହୋଇଗଲାଣି କହି ତାକୁ ବାରମ୍ବାର ଫେରେଇ ଦେଇଛି । ମଙ୍ଗରାଜେ ବାଘସିଂହ ବଂଶର ଗୌରବ ସହି ନପାରି ତାଙ୍କ ସଙ୍ଗରେ ଶତ୍ରୁତା କଲେ, ଚମ୍ପାକୁ ତାଙ୍କ ପୁଅମାନେ କ'ଣ ଅପମାନ ଦେଲେ ବୋଲି ସେ ତାଙ୍କ ଘର ପୋଡ଼ିଦେଇ ଆତ୍ମତୃପ୍ତି ପାଇଲେ । ଆଜି ମୋର କ'ଣ ସେମିତି ପରଶ୍ରୀ କାତରତା, ଇର୍ଷା ମନୋଭାବ ନଥିଲା ? ମୁଁ ପତ୍ର ପ୍ରକାଶ୍ୟରେ ପ୍ରଧାନମନ୍ତ୍ରୀଙ୍କୁ କହିଥିଲି, "ସମସ୍ତେ ଭଲକରି ଦେଖନ୍ତୁ ଆଜି, ବନେଇ ପରଡ଼ା ଝିଅ ପୁଣ ଯାଇ ବାଜଣଘରେ ରହିଛି ।" ମଙ୍ଗରାଜଙ୍କ ଠାରୁ ମୋର ତଫାତ୍‌ଟା ଆଜି ରହିଲା କେଉଁଠି ? ଚମ୍ପାପରି ଗୋଟିଏ ଲୋକ ପାଇଥିଲେ ମୁଁ ହୁଏତ ମଙ୍ଗରାଜଙ୍କୁ ଟପି ଯାଇଥାନ୍ତି । ମୋ ହାତରେ ସେମିତିଆ ଗୋଟାଏ ବୁଦ୍ଧିଆ ଲୋକ ନାହିଁ । ନିଧିଆଟା ଖାଲି ବଳଦ ପରି ଖଟିଜାଣେ, ତା'ଛଡ଼ା ଆଉ କେଉଁଥିକି ଯୋଗ୍ୟ ନୁହେଁ । ତେବେ ଯିଏ ଯାହା କହୁ ମୁଁ ଯେତିକି ଆତ୍ମ ବିଶ୍ଳେଷଣ କରିଛି, ବୁଝିଛି ମୁଁ ମଙ୍ଗରାଜ ଠାରୁ ଉଚ୍ଚରେ । ଆଜି କାହାର କଥା ରଖିବାକୁ ଯାଇ ମୁଁ ମୋର ମାନ ସମ୍ମାନ ସବୁ ହରାଇଛି ? ସେଇ ଧୋବା ବୋଉ ତ ? ଧୋବା ପାଇଁ ଆଖିର ଲୁହ ଆଜି କାହିଁକି ମୋ ହୃଦୟକୁ ଶରବିଦ୍ଧ କରୁଛି ? ସେମାନଙ୍କ ପ୍ରତି ମୁଁ ଢ଼େର ଅନ୍ୟାୟ କରିଛି ସତ । ମମତା ଫଲ୍‌ଗୁ ଅନ୍ତଃସଲିଳା ସ୍ରୋତ ପରି ପ୍ରବାହିତ ହେଉଥିଲା । ଅପତ୍ୟ ସ୍ନେହ ହୃଦୟ କନ୍ଦରରୁ ନିଶ୍ଚିହ୍ନ ହୋଇ ନଥିଲା ନିଶ୍ଚୟ, ଯାହା ଆଜି ରୂପ ନେଇଛି ପୂର୍ଣ୍ଣାଙ୍ଗ ଭାବରେ ।

ଲୋକେ ଯାହା କହୁଛନ୍ତି ବା କହିବେ ସେଥିପାଇଁ ଆଉ କାନଦେଇ ଲାଭ କ'ଣ ? କ'ଣ ବା ଆଜି ମୋର ଅଛି ? ବିପୁଳ ସମ୍ପତ୍ତି ଛଡ଼ା ମୁଁ ସବୁ ହରେଇଛି । କେବଳ ଅଛି ଧୋବୀ । ସେ ବି ମୋ ଉପରେ ପ୍ରତିଶୋଧ ନେଉଛି । କେତେବେଳେ ସେ ମତେ ଫାଙ୍କି ଦେଇ ଚାଲିଯିବ କିଏ କହିବ ? ତା'ର ଯାହା ଅବସ୍ଥା ହେଲାଣି ଜୀବନ ଉପରେ ଆଶା କ୍ଷୀଣ । ଏତିକି ମାତ୍ର ମୋର ଭରସା, ବୈଦ୍ୟ କହୁଛି ରୋଗ କିଛି ନାହିଁ । ରୋଗ ପଦେ କିଛି ନାହିଁ ତେବେ ଏଇଟା ନିଶ୍ଚୟ ମାନସିକ ପ୍ରତିକ୍ରିୟା । ସେଦିନ ଧୋବୀର ଆଖି ଆଗରେ ସନିଆଁ ମତେ ଯେଉଁ ଅପମାନ ଦେଇଗଲା, ସେ ସହି ପାରିଲା ନାହିଁ । ତା'ଛଡ଼ା ସନିଆ ପାଇଁ ତା' ମନରେ ଯେଉଁ ଆଶାର ଦୀପ କ୍ଷୀଣ ହେଲେ ବି ଜଳୁଥିଲା ।

ସେ ଲିଭିଗଲା । ସେଇଥି ପାଇଁ ଧୋବୀର ଅଜ ଏ ଅବସ୍ଥା । ଇସ୍ ! କ'ଣ ହେଲାଣି ତା'ର ରୂପ, ହଚ୍ଛଣାରେ ଲାଗିଗଲାଣି । ନ ଧଇଲେ ଉଠି ପାରୁନ । ଦେହରେ ବନ୍ଦ ଏ ରକ୍ତ ଆଉ ହଳେ ମାଂସ ଅଛି କି ନାହିଁ ସନ୍ଦେହ । ଠିକ୍ ଏମିତି ହୋଇ ଫେରିଥିଲା ସନେଇ, ଠିକ୍ ଏଇ ରୂପ ନେଇ ଅସଂଖ୍ୟ କାଙ୍ଗାଳ ଚାଲିଯାଇଛନ୍ତି ଏଗାଁ ଦାଣ୍ଡରେ । ଧନର ଅଧୀଶ୍ୱର ହେଲେ ବି କେବେ ଆହା ପଦର ସ୍ପନ୍ଦନ ମୋ ତୁଣ୍ଡରୁ । ସନଆକୁ ଦେଖି ଖୁସି ହୋଇଛି । ଅନ୍ୟମାନଙ୍କୁ ଦେଖି କର୍ମଫଳ ଭୋଗୁଛନ୍ତି କହି ଆଖି ଫେଡେଇଛି । ଅଜ ମୋ ଝିଅ ହରଟ ଦୁଇଟା ସଂପତ୍ତିର ଅଧିକାରଣୀ ହୋଇ, ଧନର ପ୍ରାଚୁର୍ଯ୍ୟ ଭିତରେ ରହି କାଙ୍ଗାଳର ରୂପ ନେଇଛି । କିଏ ଏଥିପାଇଁ ଦାୟୀ ? ଓଃ ! ଧୋବୀ କ'ଣ ସତରେ ଭଲ ହେବନି ? ତା' ହେଲେ ମୁଁ କ'ଣ କରିବ ? ତା' ଛଡ଼ା ମୋ ସଂସାର ବ୍ୟର୍ଥ, ଜୀବନ ନିରର୍ଥକ, ତାକୁ ଯେପରି ହେଉ ବଞ୍ଚାଇବାକୁ ହେବ । ମନରେ ପୁଣି ଜଗେଇବାକୁ ହେବ ବଂଚି ରହିବାର ପିପାସା । ଆଉ ସନଆଁ ? ତା ପାଇଁ ବ୍ୟବସ୍ଥା କ'ଣ ? ସିଧା ଆଙ୍ଗୁଠିରେ ନ ହେଲେ ବି ବଙ୍କା ଆଙ୍ଗୁଠିରେ 'ଘିଅ କାଢ଼ିବାକୁଇ ହେବ । ସେଇଥିପାଇଁ ତ ମହାନ୍ତିଏ, ପ୍ରହରାଜେ ସମସ୍ତଙ୍କ ସାହାଯ୍ୟରେ ଗୋଟାଏ ନୂଆ ପନ୍ଥା ସ୍ଥିର କରିଛନ୍ତି । ଦେଖାଯାଉ— କ'ଣ ହେଉଛି । ହେଇତ, ପହରାଜେ ଫେରିଲେଣି । ଗାଁ ଲୋକଙ୍କର ପାଟି ତୁଣ୍ଡତ ଖୁବ୍ ଶୁଭୁଥିଲା । ନିଶ୍ଚୟ ଶୁଭ ଲକ୍ଷଣ । ବାଃ ! ପ୍ରହରାଜେ ହସି ହସି ଫେରୁଛନ୍ତି । ସନଆ ତେବେ ହାତ ମୁଠାରେ । କ'ଣ ପ୍ରହରାଜେ ? ସୁରୁଖୁରୁରେ ସବୁ ହେଇଗଲା ? କେହି ବାଧା ଦେଲେ ନାହିଁ ? ବେଶ୍ ଭଲକଥା କିନ୍ତୁ ଏସବୁ ତ ମୋର ମୂଳ ଲକ୍ଷ୍ୟ ନୁହେଁ । ଏସବୁ ହେଉଛି ମାଧ୍ୟମ, ଲକ୍ଷ୍ୟ ମୋର ସନଆ, ସନଆଁ କାହିଁ ? ଏଁ !! ନାହିଁ ? ଘର ଖାଲି ପଡ଼ିଛି ? ଏ କାଗଜ ଖଣ୍ଡକରେ କ'ଣ ଲେଖା ହୋଇଛି ? "ଏଘର ଏ ସଂପତ୍ତି ସବୁ ଧୋବୀ ଝଙ୍କାରେ ।" ତେବେ ସନଆଁ ଚାଲିଗଲା ! ମୋ ମନର ସବୁ ସପନ ସବୁ ଆଶାକୁ ମୂଳରୁ ମାରିଦେଇ ମୋ ମୁହଁରେ ପାଦରଖି ଖବ୍ ଦମ୍ଭରେ ଚାଲିଗଲା ସନଆଁ । କିନ୍ତୁ ଧୋବୀ ? ଧୋବୀକୁ ମୁଁ କଣ କରିବ ? ଧୋବୀ ଏତେ ବ୍ୟସ୍ତ ହୋଇ ପଡ଼ୁଛି କାହିଁକି ? ତକିଆ ଉପରେ ମୁଣ୍ଡ ରଖି ସେ ନିଶ୍ଚଳ ହୋଇପଡ଼ି ରହିଛି କାହିଁକି ? ଧୋବୀକୁ ବାରମ୍ବାର ଡାକିଲେ ସେ ଯେ ଶୁଣୁନାହିଁ । ସେ କ'ଣ ସବୁଦିନ ପରି ରାଧାମାଧବଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରୁଛି ? ନା ମୋ ଉପରେ ରାଗକରି ଉତ୍ତର ଦେଉନାହିଁ ? କି ଆଉ କିଛି ହେଲା ? ସେ ଯେ

ଅଥବ, ଅଚଳ ମନେ ହେଉଛି । ଧୋବାର କ'ଣ ହେଲା ? ହେ ପ୍ରଭୁ ! ସବୁତ ଗଲଣି, ସବୁତ ମୋଠାରୁ କାଢ଼ି ନେଲଣି । ଆଜ କ'ଣ ବା ବାକି ଅଛି ? କେବଳ ଅଛି ଏ ମୃତକଳ୍ପ ଝିଅ ଧୋବା ତାକୁ ବି ନେଇଯିବ ??? ନେଇ ଯିବ ପ୍ରଭୁ ? ମୋ ଶାସ୍ତିର କଠୋର କଷଣକୁ········ଠେଲି ଦେଇ ମୋତେ ଏଇ ଜୀବନ୍ମୃତ ସାହାରାର ଉତପ୍ତ ବାଲି ଦ୍ୱୀପରେ । ମୁଁ ଚାହେଁଇ ଯୋଇଁ, ମୋ ପାଇଁ ସାଇତା ଗାଲି ଶାସ୍ତିର ଉପହାର !

---

ନବରଷ
ଡିସେମ୍ବର, ୧୯୭୦

# ଓଡ଼ିଆ ସାହିତ୍ୟ ଓ ଇତିହାସରେ ମାଣିକ ପ୍ରସଙ୍ଗ : ଏକ ବିବେଚନା

ଅଗ୍ରବେ କେହି ଅଣାଇଁ ମୋତେ ନ ପାରନ୍ତି
ଭାବ କରି ଦେଲେ ହୁଏ ଅଫଲକେ ଶାନ୍ତି ।

ଶ୍ରଦ୍ଧା ଓ ଭକ୍ତିଭାବ ନଥାଇ ଭଗବାନଙ୍କୁ ଯାହା ଅର୍ପଣ କରାଯାଏ ତାହା ସେ ଗ୍ରହଣ କରନ୍ତି ନାହିଁ । କିନ୍ତୁ ଭକ୍ତର ବଶ ଭଗବାନ । ଭକ୍ତି ଭାବରେ ଦେଲେ ଅଳ୍ପରେ ଓ ମୁଠାଏ ଖୁଦକରେ ସେ ମୋହିତ ହୁଅନ୍ତି । ଏ ପ୍ରକାର ଅନେକ ଭକ୍ତ ଆମ ପୁରାଣ ଓ ସାହିତ୍ୟରେ ସ୍ୱୀକୃତ ଅଛନ୍ତି । ସେମାନେ ବିପୁଳ ଦ୍ରବ୍ୟ ସମ୍ଭାରରେ ଭଗବାନଙ୍କୁ ଅର୍ଚ୍ଚନା କରିନାହାନ୍ତି । ଅଳ୍ପ ପଦାର୍ଥ କିନ୍ତୁ ଗଭୀର ଭକ୍ତିଭାବ ଦ୍ୱାରା ହିଁ ତାଙ୍କୁ ସନ୍ତୁଷ୍ଟ କରିପାରିଛନ୍ତି ।

ସେହିପରି ଭକ୍ତ ପ୍ରବୀଣା ଗୋପବଧୂ ମାଣିକଠାରେ ମୁଦି ବନ୍ଧା ଦେଇ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ଦହି ଖାଇଥିବା ବିଷୟ ସର୍ବଜନ ବିଦିତ । ଏହାର ଐତିହାସିକ ସତ୍ୟତା ଥାଉ ବା ନଥାଉ ଏହା କିମ୍ବଦନ୍ତୀ ଭାବରେ ପ୍ରତି ଉତ୍କଳୀୟଙ୍କ ପ୍ରାଣରେ ପାଳିତ ହୋଇ ଆସିଛି । ତେଣୁ ମାଣିକ ସାଧାରଣ ଏକ ଗ୍ରାମ୍ୟ ନାରୀ ନହୋଇ ଉତ୍କଳୀୟଙ୍କ ଦୃଷ୍ଟିରେ ଅନନ୍ୟ ସାଧାରଣ ଏକ ନାରୀ ହୋଇ ପାରିଛନ୍ତି । ସେଥିପାଇଁ ମାଣିକ ଓଡ଼ିଶାର ଇତିହାସ ଓ କିମ୍ବଦନ୍ତୀର ସୀମାକୁ ଅତିକ୍ରମ କରି ସାହିତ୍ୟର ପରିସୀମାରେ ମଧ୍ୟ ନିଜର ପଦଚିହ୍ନ ରଖି ଯାଇଛି ।

ପୁରୁଷୋତ୍ତମ ଦେବ କାଞ୍ଚିଯାତ୍ରା କରିବା ଓ ପ୍ରଥମଥର ପରାଜିତ ହେବାପରେ ଦ୍ୱିତୀୟଥର ସାଲ୍ୱନରସିଂହଙ୍କୁ ପରାସ୍ତକରି କାଞ୍ଚି ଜୟ କରିବା ଘଟଣା ଇତିହାସ ସମ୍ମତ ସତ୍ୟ । କିନ୍ତୁ ଭକ୍ତ ପ୍ରବର ପୁରୁଷୋତ୍ତମଙ୍କୁ ସାହାଯ୍ୟ କରିବା

ପାଇଁ ସ୍ୱୟଂ ଜଗନ୍ନାଥ ଅଶ୍ୱପୃଷ୍ଠରେ କାଞ୍ଚି ଅଭିମୁଖେ ଯାତ୍ରା କରିବା ଓ ପଥ ମଧ୍ୟରେ ମାଣିକ ଗଉଡୁଣୀ ଠାରୁ ଦହି ଖାଇବା ଘଟଣାର ଐତିହାସିକ ସତ୍ୟତା କେତେଦୂର ରହିଛି କହି ହେବ ନାହିଁ ।

ମାଦଳାପାଞ୍ଜିରେ ଏହି ଘଟଣାଟିର ମଧ୍ୟ ଉଲ୍ଲେଖ ଅଛି । ନିଜେ ଜଗନ୍ନାଥ କାଞ୍ଚି ଅଭିମୁଖେ ଯାତ୍ରା କରିବା ବିଷୟ ମହାସୁଆରଙ୍କୁ ସ୍ୱପ୍ନରେ କହିଥିଲେ ଏବଂ ତାହା ଶୁଣି ପୁରୁଷୋତ୍ତମଦେବ ଆଶାନ୍ୱିତ ହୋଇ କାଞ୍ଚି ଯାତ୍ରା କଲେ । ଜଗନ୍ନାଥ ପ୍ରକୃତ କାଞ୍ଚି ଗମନ କଲେ କି ନାହିଁ ଜାଣିବା ପାଇଁ ରାଜାଙ୍କର ପ୍ରବଳ ଇଚ୍ଛା ଜାତ ହେଲା । ଭାବଗ୍ରାହୀ ଜଗନ୍ନାଥ ତାହା ଜାଣି ସଙ୍କେତ ସ୍ୱରୂପ ମାଣିକଠାରେ ମୁଦି ଦେଇଗଲେ । ମାଦଳାପାଞ୍ଜିରେ ତାହା ଏହିପରି ରୂପାୟିତ ହୋଇଛି "କିଛିଦୂର ଗଲା ଉତ୍ତାରୁ ମନେ ବିସ୍ମରିଲେ ମହାପ୍ରଭୁଙ୍କର କିଛି ସଙ୍କେତ ନପାଇଲା । ଏହା ପ୍ରଭୁ ଜାଣି ଗଉଡୁଣୀଠାରୁ ରତ୍ନମୁଦି ଦେଇ ଗଲେ । ସେ ମୁଦି ରାଜା ପାଇ ବହୁତ କାକୁସ୍ଥ ହୋଇ ମଥାରେ ଲଗାଇଲେ ।" ମାଣିକଠାରେ ମୁଦି ଦେଇଯିବା ଘଟଣାରୁ ପୁରୁଷୋତ୍ତମ-ଦେବଙ୍କର ଭକ୍ତିମତ୍ତା ଯେତେ ଜ୍ଞାପିତ ହେଉଛି, ମାଣିକ ଚରିତ୍ରର ମହତ୍ତ୍ୱ ସେତେ ପ୍ରକଟିତ ହୋଇନାହିଁ । କାରଣ ଏ ବର୍ଣ୍ଣନାରୁ ମନେହୁଏ ପୁରୁଷୋତ୍ତମଙ୍କ ମନରେ ପ୍ରତ୍ୟୟ ଆଣିବା ପାଇଁ ସେ ଦହି ଖାଇ ମୁଦି ଦେଇଗଲେ । ନିର୍ଦ୍ଦିଷ୍ଟ ଭାବରେ ମାଣିକଠାରୁ ଦହି ଖାଇବାର ଅନ୍ୟ କିଛି ଆସକ୍ତି ବା ଉଦ୍ଦେଶ୍ୟ ନଥିଲା ।

ଅବଶ୍ୟ ପୁରୀ ମନ୍ଦିର ଓ ଅନ୍ୟାନ୍ୟ ଅନେକ ପ୍ରାଚୀନ ମନ୍ଦିରର କାନ୍ଥରେ ମାଣିକ ଓ ତାଁ ପାଖରେ ଅଶ୍ୱାରୂଢ଼ ଜଗନ୍ନାଥ ଓ ବଳଭଦ୍ରଙ୍କର ଚିତ୍ର ଦେଖିବାକୁ ମିଳେ । ଜାମସ୍ ସାହେବ ସୁବର୍ଣ୍ଣରେଖା ନଦୀର ପାରବର୍ତ୍ତୀ ନିବିଡ଼ ଅରଣ୍ୟସ୍ଥ ଏକ ପ୍ରାଚୀନ ଦୁର୍ଗ ମଧ୍ୟରେ ଏତାଦୃଶ୍ୟ ଦୁଇଜଣ ଅଶ୍ୱାରୋହୀ ଯୁବକ ସହିତ ଜଣେ ତରୁଣୀ ନାରୀର ମୂର୍ତ୍ତି ସନ୍ଦର୍ଶନ କରିଥିବା ବିଷୟ ଉଲ୍ଲେଖ କରିଛନ୍ତି । ଷ୍ଟର୍ଲିଂଙ୍କ ଓଡ଼ିଶା ବିବରଣୀରେ ମଧ୍ୟ କାଞ୍ଚି କାବେରୀ କାହାଣୀ ବିଷୟଟି ବର୍ଣ୍ଣିତ ହୋଇଛି ।

'ଓଡ଼ିଶା ଇତିହାସ'ରେ କାଞ୍ଚି ବିଜୟ ଉଦ୍ଦେଶ୍ୟରେ ପୁରୁଷୋତ୍ତମ ଦେବଙ୍କର ପ୍ରଥମ ଯାତ୍ରା ଓ ପରାସ୍ତ ହୋଇ ଜଗନ୍ନାଥଙ୍କ ଶରଣାଗତ ହେବା

ଘଟଣା ଏବଂ ଜଗନ୍ନାଥଙ୍କର ମାଣିକଠାରୁ ଦହି ଖାଇବା ବୃତ୍ତାନ୍ତକୁ ଡ଼. ମହୃତାବ କିଂବଦନ୍ତୀ ବୋଲି ଗ୍ରହଣ କରିଛନ୍ତି ।

ପୁରୁଷୋତ୍ତମ ଦେବଙ୍କ ସମସାମୟିକ କବି ବଳରାମ ଦାସ ବେଢ଼ା ପରିକ୍ରମାରେ ଏହି ବିଷୟ ଉଲ୍ଲେଖ କରିଛନ୍ତି :

"ଏଥୁ ଅନନ୍ତରେ ଜଗମୋହନରେ ଦେଖିବ ବେନି ଭାଇଙ୍କି
ଧଳେ ଘୋଡ଼ାରେ ଚଢ଼ିଣ ସଙ୍ଗରେ କାଞ୍ଚିକାବେରୀ ପାଇଁ କି ।"

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ମନେହୁଏ ଯେ ପୁରୁଷୋତ୍ତମ ଦେବଙ୍କର 'କାଞ୍ଚିଜୟ' ଏକ ଦୁଃସାଧ୍ୟ ବ୍ୟାପାର ଥିଲା । ଇଷ୍ଟଦେବ ଜଗନ୍ନାଥଙ୍କ କୃପାରୁହିଁ ସେ କାଞ୍ଚିଜୟ କରିବା ପାଇଁ ସକ୍ଷମ ହୋଇଥିଲେ । ପ୍ରଥମ ଥର ପରାଜିତ ହେବା ଓ ଦ୍ୱିତୀୟ ଥର ଜୟଯୁକ୍ତ ହୋଇ 'କାଞ୍ଚିବିଜେତା' ଭାବେ ପୁରୁଷୋତ୍ତମ-ଦେବ ସାହିତ୍ୟ ଓ ଜନଶ୍ରୁତିରେ ପ୍ରସିଦ୍ଧି ଲାଭ କରିବା ମୂଳରେ ଓଡ଼ିଶାବାସୀ-ଙ୍କର ଧର୍ମ ଧାରଣାହିଁ ନିହିତ । ଜଗନ୍ନାଥଙ୍କ କୃପା ପାଇବା ସତ୍ତ୍ୱେ ପ୍ରଥମ ଥର ପରାଜିତ ହେବା ଅବିଶ୍ୱାସ୍ୟ ମନେ ହୋଇପାରେ; କିନ୍ତୁ ସ୍ୱୟଂ ଜଗନ୍ନାଥ ଯୁଦ୍ଧ କ୍ଷେତ୍ରକୁ ଯାଉଥିବା ଜାଣି ପୁରୁଷୋତ୍ତମ ଦେବଙ୍କ ମନରେ ଜାତ ହୋଇଥିବା ଗର୍ବହିଁ ପ୍ରଥମ ପରାଜୟର କାରଣ । ତତ୍କାଳୀନ ଓଡ଼ିଶାବାସୀଙ୍କ ମନରେ ଏ ପ୍ରକାର ବଦ୍ଧମୂଳ ଧର୍ମଧାରଣା ଜାତ ହୋଇଥିଲା । ତେଣୁକରି ପୁରୁଷୋତ୍ତମ ଦେବଙ୍କ ମନରେ ପ୍ରତ୍ୟୟ ଆଣିବା ପାଇଁ ଜଗନ୍ନାଥ ବାଟରେ ମାଣିକଠାରୁ ଦହି ଖାଇ ସଙ୍କେତ ସ୍ୱରୂପ ତାକୁ ମୁଦି ଦେଇଯିବା ଘଟଣାଟି ଜନ ମାନସରେ ନିରାଟ ବାସ୍ତବ ମନେ ହୋଇଥିଲା । ବର୍ତ୍ତମାନ ମଧ୍ୟ ଉତ୍କଳର ଜନତା ମାଣିକ କାହାଣୀକୁ କିମ୍ବଦନ୍ତୀର ସୀମାରୁ ମୁକ୍ତକରି ଇତିହାସର ପ୍ରଲେପ ଦେଇଥା'ନ୍ତି ।

ଇତିହାସ ଓ କିଂବଦନ୍ତୀ ଅପେକ୍ଷା ସାହିତ୍ୟ କ୍ଷେତ୍ରରେ ମାଣିକର ଅବାଧ ପ୍ରବେଶ ପରିଲକ୍ଷିତ ହୁଏ । ସାହିତ୍ୟର ପରିସୀମା ମଧ୍ୟକୁ ଟାଣି ଆଣିଥିବା ସାହିତ୍ୟିକମାନଙ୍କ ମଧ୍ୟରେ ଷୋଡ଼ଶ ଶତାବ୍ଦୀର ମଧ୍ୟ ଭାଗରେ ଆବିର୍ଭୂତ ଭକ୍ତକବି ପୁରୁଷୋତ୍ତମ ଦାସ ପ୍ରଥମ ବୋଲି ମନେହୁଏ ।

ପୂର୍ବରୁ ଉଲ୍ଲେଖ ଅଛି ଯେ ମାଦଳାପାଞ୍ଜି ବର୍ଣ୍ଣିତ ମାଣିକ ଉପାଖ୍ୟାନ ଏବଂ ତଦନୁରୂପ ବନ୍ଦିତ ମୂର୍ତ୍ତି ଓ ଶବରୁ ରାଜା ପୁରୁଷୋତ୍ତମ ଦେବଙ୍କର

ଭକ୍ତମନ୍ତ୍ର ହିଁ ବେଶୀ ପ୍ରକଟିତ ହେଉଛି, କାରଣ ରାଜାଙ୍କୁ ସଙ୍କେତ ଦେବାପାଇଁ ମାଣିକର ଆବିର୍ଭାବ । ମାଣିକ ଏଠି ଏକ ମାଧ୍ୟମ ମାତ୍ର ।

କିନ୍ତୁ ପୁରୁଷୋତ୍ତମ ଦାସଙ୍କ ଲିଖିତ 'କାଞ୍ଚିକାବେରୀ' କାବ୍ୟରେ ମାଣିକ ଏକ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରିପାରିଛି । ଏପରିକି କାବ୍ୟଟିରେ ପୁରୁଷୋତ୍ତମ ଦେବ ଓ ପଦ୍ମାବତୀ କିମ୍ବା ପ୍ରଭୁ ଜଗନ୍ନାଥ ଓ ମାଣିକ, କିଏ ନାୟକ ନାୟିକା ନିର୍ବାଚନ କରିବା ଆୟାସ ସାପେକ୍ଷ ହୋଇ ପଡ଼ିଛି । ମାଦଳା ପାଞ୍ଜି ବା କିଂବଦନ୍ତୀରୁ ଗଳ୍ପାଂଶକୁ ଗ୍ରହଣ କରିଥିଲେ ହେଁ ଭକ୍ତମନ୍ତ୍ର ଓ କବିତ୍ୱର ରୂପାୟନରେ କବି ଯେଉଁ ମୌଳିକତା ପ୍ରଦର୍ଶନ କରିଛନ୍ତି ତାହା ହିଁ ମାଣିକକୁ ଜନମାନସରେ ଚିରଞ୍ଜୀବୀ କରିପାରିଛି । ମାଣିକର ରୂପ, ଗୁଣ ଓ ରସବିଦଗ୍ଧ ପ୍ରାଣର ଚଟୁଳ ବର୍ଣ୍ଣନା ତାକୁ ନାୟିକାର ସୋପାନକୁ ଉନ୍ନୀତ କରିଛି ।

କର୍ଣ୍ଣରେ ମଲ୍ଲୀକଢ଼ି, ଗଳାରେ କଣ୍ଠି, ବାହୁରେ ତାଡ଼, ପାଟଫୁଲ ଓ ବାମ କାନ୍ଧରେ ପଣନ୍ତ ପକାଇବା ଏବଂ ଗୋଟିଏ ଗୋଡ଼ରେ ପଟିଏ ବଳା ପିନ୍ଧିବା ତତ୍କାଳୀନ ଓଡ଼ିଆଣୀର ବେଶଭୂଷାକୁ ହିଁ ସୂଚାଏ । ପଦ୍ମାବତୀର ରୂପ ବର୍ଣ୍ଣନା ଅପେକ୍ଷା ମାଣିକର ରୂପ ବର୍ଣ୍ଣନା ଅଧିକ ବିସ୍ତୃତ ଓ ସ୍ୱାଭାବିକ ହୋଇଛି । ମାଣିକର ରୂପ ବର୍ଣ୍ଣନାଂଶଟିକୁ ଦେଖିଲେ ମନେହୁଏ ପଦ୍ମାବତୀ ନ ହୋଇ ମାଣିକ ଆଜି ନାୟିକା କି ? (୧)

---

୧—ତିଳ ଫୁଲ ନାସାରେ କହୁଣି ଚନ୍ଦ୍ର ଗୁଣା
ଗୁରୁ ଶୁକ ପ୍ରାୟେ କର୍ଣ୍ଣେ ତାଟଙ୍କ ପ୍ରମାଣ
କର୍ଣ୍ଣେ ମଲ୍ଲୀକଢ଼ି ତା'ର ଶୋହେ ଦିବ୍ୟ ଫୁଲ
ଏକକୁ ଆରେକ ଜିଣି ସମସ୍ତେ ଅମୂଲ
କଣ୍ଠରେ ଯେ କଣ୍ଠିମାଳି ତନା- ଅଛି ଜଡ଼ି
କନକ ଖଚିତ ଶୋଭା ଦିଶେ ହସ୍ତେ ଚୂଡ଼ି
ବାହେ ତାଡ଼ ବଡ ତହିଁ ତଳେ ପାଟଫୁଲ
ପଞ୍ଚାଙ୍ଗୁଳରେ ମୁଦ୍ରିକାମାନ ଝଟଶ ଝଳ
କଳାମେଘୀ ଝିନ ଶାଢ଼ୀ ପହରଣ କରି
ବାମ କାନ୍ଧେ ପଣନ୍ତ ଯେ ହାଟୋଇଙ୍କ ପରି
ଜାନୁ ଓଲଟ ରମ୍ଭା କି କନକର କାନ୍ତ
ବାମ ଚରଣରେ ବଳା ପଟିଏ ଶୋହନ୍ତି ।
( ପୁରୁଷୋତ୍ତମ ଦାସ—ଓଡ଼ିଆ 'କାଞ୍ଚିକାବେରୀ', ପଂକ୍ତି—୫୮-୭୧ )

ଯାହାହେଉ ରୂପ ବର୍ଣ୍ଣନାର ଅଭିନବତ୍ୱ ପାଠକକୁ ଯେପରି ତୃପ୍ତ କରୁଛି, ମାଣିକାର ରୂପ ଜଗନ୍ନାଥଙ୍କୁ ମଧ୍ୟ ସେହିପରି 'ମୁଗ୍ଧ' କରିଛି । କବି ମାଣିକାକୁ ରୂପ ଓ ଗୁଣରେ ରାଧାତୁଲ୍ୟା କରିପାରିଛନ୍ତି (୨) । ଏପରିକି ମାଣିକାର ବାପାର ନାମ ବୃଷ ବେହେରା ଓ ସ୍ୱାମୀର ନାମ ଚନ୍ଦ୍ର ବେହେରା ରଖିବାକୁ ଭୁଲି ନାହାନ୍ତି । ଜଗନ୍ନାଥ ମାଣିକାକୁ ଦର୍ଶନ କଲାପରେ କୃଷ୍ଣ ଅବତାରର ସମ୍ଭୋଗ କରୁଥିବା ରାଧାର ସ୍ମୃତି ତାଙ୍କ ମନକୁ ଆସିଛି (୩) । କବି ପୁରୁଷୋତ୍ତମ ଦାସ ମାଣିକାକୁ ଶୁଦ୍ଧ ରାଗାନୁଗା ଭକ୍ତିର ଉପାସିକା ରାଧା ସହିତ ସମାନ କରି ତୋଳିଛନ୍ତି । ତେଣୁକରି ବୈଷ୍ଣବମାନେ ରାଧାଙ୍କର ଶ୍ରେଷ୍ଠତ୍ୱ ଉପଲବ୍ଧି କଲାପରି କବି ପୁରୁଷୋତ୍ତମ ଦାସ ମାଣିକାର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ଏପରିକି ଜଗନ୍ନାଥ ବା ବଳଭଦ୍ରଙ୍କର ଚରଣ ସ୍ମରଣ ପରିବର୍ତ୍ତେ କବି ବହୁସ୍ଥାନରେ ମାଣିକାର ଶରଣ ପଶିଛନ୍ତି (୪) ।

ଦହିଲା କାଞ୍ଚନ ପରି ଗୌରାଙ୍ଗୀ ମାଣିକା କେବଳ ରୂପ ଦୃଷ୍ଟିରୁ ରାଧା ସହିତ ତୁଳନୀୟା ନୁହେଁ । ଅନାବିଳ ଭକ୍ତିମତ୍ତା ପାଇଁ ସେ ପୂଜ୍ୟା । ଗୋପାଳ କୁଳରେ ସାଧାରଣ ଏକ ନାରୀ ହୋଇ ସେ ଜନ୍ମ ଗ୍ରହଣ କରିଥିଲେ ହେଁ ପୂର୍ବ ଜନ୍ମର ଅଭିଳାଷ ହେତୁ ବାଲ୍ୟକାଳରୁ ତା'ର ଈଶ୍ୱରପ୍ରୀତି ଜାଗ୍ରତ ହୋଇଥିଲା । ପ୍ରତିଦିନ ପସରା ଧରି ବିକିବା ପାଇଁ ଆସିବା ସମୟରେ ପ୍ରଥମେ

---

୨—ଅପୂର୍ବ ସୁନ୍ଦରୀ ସେ ଯେ ଶୋଭେ ରାଧା ଅଂଶ
ପସରା ଘେନିଣ ଦାଣ୍ଡ ନିକଟେ ପ୍ରବେଶ

ଓ: କା: କା—ପଂକ୍ତି ୩୭୬

୩—ନିରେଖି ତା'ର ରୂପକୁ ଅନାଇ ନୟନେ
ଦ୍ୱାପର ଯୁଗ ରାଧା ପଡ଼ିଲା ଆସି ମନେ

ଓ: କା: କା—ପୃ-୨୯

୪—ସେ ମାଣିକା ଗୋଆଳୁଣୀ ଚରଣେର ତଳେ
ପୁରୁଷୋତ୍ତମ ଦାସ ଶରଣ ସଦାକାଳେ ।

ଓ: କା: କା—ପୃ-୨୯ ଓ ପୃ-୩୪

ପତିତପାବନ ବାନାକୁ ଲକ୍ଷ୍ୟକରି ତା' ପସରାର ସମସ୍ତ ସମ୍ଭାର ସେ ମନେ ମନେ ଅର୍ପଣ କରେ (୫) ।

ମାଣିକା ଚାଙ୍ଗି ବା କିଂବଦନ୍ତୀରେ ମାଣିକୀ ଯେପରି ଭକ୍ତିମତୀ ପୂରୁଷ ହୋଇ ରହିଯାଇଛି, କାଞ୍ଚିକାବେରୀ କାବ୍ୟରେ କବି ସେପରି ନକରି ତା' ଠାରେ ଭକ୍ତର ଭୂମିକା ପ୍ରଦାନ କରିଛନ୍ତି । ତେଣୁକରି ପ୍ରଭୁ ଜଗନ୍ନାଥ ପୁରୁଷୋତ୍ତମ ଦେବଙ୍କୁ ସଙ୍କେତ ପ୍ରଦାନ କରିବା ଓ ମାଣିକାର ମନୋବାଞ୍ଛା ପୂରଣ କରିବା ଉଭୟ କାର୍ଯ୍ୟ ଏକ ସମୟରେ ସମାପନ କରିଛନ୍ତି (୬) । ଭକ୍ତିମତ୍ତ୍ୱ ପାଇଁ ମାଣିକା ପ୍ରଭୁ ଜଗନ୍ନାଥ, କବି ପୁରୁଷୋତ୍ତମ ଦାସ ଓ ରାଜା ପୁରୁଷୋତ୍ତମ ଦେବଙ୍କ ଦ୍ୱାରା ଆଦୃତ ହୋଇ ପାରିଛି (୭) ।

ମାଣିକା କେବଳ ଭକ୍ତିପ୍ରାଣା ନୁହେଁ, ପ୍ରୀତିପ୍ରବଣା ମଧ୍ୟ । ସେ ପୂର୍ବ ଜନ୍ମର ଧର୍ମ ଧାରଣା ହେତୁ ସର୍ବଦା ଗୋବିନ୍ଦଙ୍କୁ ସ୍ମରଣ କରେ ସତ,

---

୫—ପୂର୍ବ ବାସନାରୁ ତା'ର ବାଳକାଳୁ ଜ୍ଞାନ
ସୁଶିକ୍ଷ ହୋଇ ତାହାର ବିଶ୍ୱାସ ଥାଇ ମନ
ପ୍ରତିଦିନ ପସରା ରଖାଇ ଦାଣ୍ଡେ ଆଣି
ବନ୍ଦି ଦେଉଳ ଧ୍ୱଜାକୁ ଯୋଡି ବେନି ପାଣି
ଦଧି ଦୁଧ ସର ଆଣିଥାଇ ଯେତେ ଯେତେ
ମାନସିକେ ଆଗ ତା ଦିଅଇ ଶୁଦ୍ଧ ଚିତ୍ତେ ।

ପଂକ୍ତି—୩୪୧—୩୪୬

୬—ବୋଇଲେ ସେ ମାଣିକକୁ ଦରଶନ ଦେବା
ଅନେକ ଦିନରୁ ଏହୁ କରିଅଛି ସେବା
ଏ ମାଣିକା ପସରାରୁ ଦଧି ପିବା ଖାଇ
ରାଜା ଜାଣିବ ଯେ ଆଗେ ଥିଲେ ବେନି ଭାଇ ।

ପଂକ୍ତି—୩୭୩—୩୭୬

୭—ରାଜା ବୋଇଲେ ମୋହର ହେବ ବଡ଼ ପୁଣ୍ୟ
ତୁମ୍ଭଙ୍କୁ ଯେ ଆମ୍ଭେ ଆଗ କଲୁ ଦରଶନେ ।

( କା: କା: ପଂକ୍ତି—୬୯୫ )

କିନ୍ତୁ ଦୁଇ ଗଉଡଙ୍କ ସହିତ ପ୍ରଥମ ସାକ୍ଷାତ ଘଟିବା ପ୍ରଭୃତିଠାରୁ ହିଁ ତା'ର ରସ ବିଦଗ୍ଧ ହୃଦୟର ପରିଚୟ ମିଳେ । ପ୍ରଭୁ ଜଗନ୍ନାଥ ମାଣିକାକୁ ଦେଖି ରାଧାଅଂଶୀ ବୋଲି ଚିହ୍ନି ପାରିଛନ୍ତି ଓ ମଥୁରାର କୁଞ୍ଜବନ କ୍ରୀଡ଼ାକୁ ସ୍ମରଣ କରିଛନ୍ତି । କିନ୍ତୁ ମାଣିକା ସେ କ୍ଷେତ୍ରରେ ସାଧାରଣ ମାନବୀ । କାଳିଆ ଗଉଡ ଯେ ନିଜେ ତା'ର ଇଷ୍ଟଦେବ ଜଗନ୍ନାଥ, ଏକଥା ଜାଣିବା ପାଇଁ ସେ ଅକ୍ଷମ । କାରଣ ନିଜର ପରିଚୟ ଦେଇସାରି ଗଉଡଙ୍କ ନାମଗ୍ରାମ ଜାଣିବା ପାଇଁ ଜିଜ୍ଞାସା କରିଛି । ଏପରିକି ତାଙ୍କ ଜୀବନର ସଂକ୍ଷିପ୍ତ ପରିଚୟ ପାଇ ସାରିଲା ପରେ ମଧ୍ୟ ମାଣିକା, ଜଗନ୍ନାଥଙ୍କୁ ଚିହ୍ନି ପାରିଥିବାର କୌଣସି ସୂଚନା ମିଳେ ନାହିଁ । ମାଣିକା ଜଗନ୍ନାଥଙ୍କ କଥାଶୁଣି 'କୃତକୃତ' ହେବାର ଯେଉଁ ଉଲ୍ଲେଖ ଅଛି ସେଥିରୁ ଅଧିକ ଦହି ବିକିବା ଆଶାରେ ସେ ଉତ୍କଣ୍ଠିତା ହୋଇ-ଥିବାର ପ୍ରମାଣ ମିଳେ (୮) । ତେଣୁ 'କାଞ୍ଚିକାବେରୀ' କାବ୍ୟରେ ଦୈବୀଗୁଣ ମାଣିକାର ବ୍ୟକ୍ତିତ୍ୱରେ ପ୍ରଚ୍ଛନ୍ନ ଥିଲେ ହେଁ ପ୍ରକାଶ୍ୟରେ ମାନବୀ ଗୁଣରେ ଅନୁରଂଜିତା ।

ଜଗନ୍ନାଥଙ୍କୁ ଦର୍ଶନ କରିବା ପ୍ରଥମରୁ ହିଁ ମାଣିକା ମନରେ ଅପୂର୍ବ ପୁଲକ ଓ ଆସକ୍ତି ଜାତ ହୋଇଛି । ମାଣିକା ଯୁବତୀ, ହୋଇପାରେ ସେ ବିବାହିତା । ତେଣୁ ରାଧାତୁଲ୍ୟା ମାଣିକା ମଧ୍ୟ ପରକୀୟା ପ୍ରୀତିର ବଶବର୍ତ୍ତୀ ହୋଇଛି । ଆଧ୍ୟାତ୍ମିକ ଦୃଷ୍ଟିରୁ ବିଚାର କଲେ ବିବାହିତା ରମଣୀ ମାଣିକା ଜଗନ୍ନାଥଙ୍କ ପ୍ରତି ଆସକ୍ତ ହୋଇ ନିଜ ଭକ୍ତିଭାବର ଚରମ ନିଦର୍ଶନ ରଖିଯାଇଛି । କିନ୍ତୁ ଲୌକିକ ଦୃଷ୍ଟିରୁ ପର୍ଯ୍ୟବେକ୍ଷଣ କଲେ ମନେହୁଏ ଜଗତରନାଥ ଭଗବାନଙ୍କୁ ନଚିହ୍ନି ତାଙ୍କ ପ୍ରତି ଆକୃଷ୍ଟ ହେବା ମୂଳରେ ପ୍ରୀତିପ୍ରବଣ ଗୋଟିଏ କୋମଳ ହୃଦୟ ହିଁ ରହିଛି । ଦହି ଦୁଧ ବିକିବା ତା'ର ଜୀବିକା ହେଲେ ହେଁ ଅର୍ଥଙ୍କର ଚିନ୍ତା ନକରି ମନ ତୃପ୍ତି କରି ଦର୍ଶନ କରିବା ପାଇଁ ସେ ଇଚ୍ଛା କରିଛି (୯) । ଦହିର ମୂଲ୍ୟ କଉଡ଼ି ଦେଇ ନପାରି ଜିନିଷ ବନ୍ଧା ଦେଇ

---

—ଶୁଣିକରି ମାଣିକା ଯେ କୃତକୃତ ହେଲା
କାନ୍ଧିରେ ଦେବ ବୋଲି ବେଗ ପସରା ଧଇଲା ।
( ପଂକ୍ତି — ୨୪୩ — ୪୪୪ )

୯—ଦେଖିବି ମୁଁ ଆଗ ଏଥି ନୟନ ପୂରାଇ
କଡ଼ି ନଦେଇ ପଛେ ମାଗୁଣା ଯାଉ ଖାଇ ।
( ପଂକ୍ତି — ୩୯୪ — ୩୯୫ )

ଯିବାକୁ କହିଲା ବେଳେ ମାଣିକା କାନରେ ହାତ ଦେଇଛି । ବରଂ ତାହାର ସମସ୍ତ ମୂଲ୍ୟ ସେ ଦେବ, କିନ୍ତୁ କୌଣସି କନିଷ୍ଠ ବନ୍ଧା ରଖିବାକୁ ସେ ରାଜି ନୁହେଁ (୧୦) । ଶୁଦ୍ଧ ନିର୍ମଳ ପ୍ରେମ ହିଁ ମାଣିକା ମନରେ ଏ ପ୍ରକାର ଅନୁଭୂତି ଜାଗ୍ରତ କରିଛି ।

ମାଣିକାର ଆଶା ବ୍ୟର୍ଥ ହୋଇନି । ରସିକ ଶେଖର ଜଗନ୍ନାଥ ମାଣିକୀ ସହିତ ରସିକତା କରିବାପାଇଁ ଭୁଲି ନାହାନ୍ତି । ଉଭୟଙ୍କ କଥୋପକଥନର ରସାଳ ଓ ଚଟୁଳ ବର୍ଣ୍ଣନା ଅତି ମନୋଜ୍ଞ ହୋଇଛି । ମାଣିକାର ରୂପ ବର୍ଣ୍ଣନା ଓ ଉକ୍ତି ପ୍ରତ୍ୟୁକ୍ତି ଛଳରେ ମଧ୍ୟଯୁଗୀୟ ଗ୍ରାମ୍ୟ ନାରୀର ସରଳ, ନିରାଭରଣ ଚିତ୍ର ପ୍ରକାଶିତ ହେବା ସହିତ ପୁରୁଷୋତ୍ତମଙ୍କ କବି ପ୍ରତିଭା ସୂଚିତ ହୁଏ (୧୧) ।

ରସିକା ମାଣିକା ଜଗନ୍ନାଥଙ୍କଠାରୁ ପରିହାସର ଉତ୍ତର ପାଇଲା । ପ୍ରେମିକ ପ୍ରେମିକା ଅସଂଖ୍ୟ କଥା କହି ଯାଆନ୍ତି ଆଖିରେ । ସେମାନଙ୍କ ଇଙ୍ଗିତ ବୁଝିବା ଅନ୍ୟ ପକ୍ଷରେ ସମ୍ଭବ ନୁହେଁ (୧୨) । ତେଣୁ ପାଖରେ ଥାଇ ମଧ୍ୟ ବଳରାମ ସେ ସବୁର ତାତ୍ପର୍ଯ୍ୟ ବୁଝି ପାରିଲେ ନାହିଁ ।

୧୦ । ଯାଉପଛେ କଉଡ଼ି ଏମନ୍ତ ଆଜ୍ଞା ନୋହୁ । ପଂକ୍ତି :—୩୯୪—୩୯୫

୧୧ । ଅଳ୍ପ କରଣ ତୁମ୍ଭେ ଘରଠାରୁ ଆଣି
ବହୁତ ହେବାପାଇଁ ପୂରଅ ଟିକ ପାଣି ।
ହସି ହସି ହୋଇଣ ସେ ବୋଲଇ ମାଣିକା
ଆମ୍ଭର ତ ଜୀବିକା ସେ ତାହା ନ ଜାଣ'କା ।

× × × × ×

ଛନ୍ଦବନ୍ଧ କଥା ଯାହା କହିଲ ଗୋସାଇଁ
ଛନ୍ଦ ନ ଶିଖିଲେ ଦାଣ୍ଡେ ଅଯୋଗ୍ୟ ବୋଲାଇ ।
ପଂକ୍ତି :—୦୧୦—୪୧୭

୧୨ । କାଳିଆ ଗଉଡ଼ର ମାଣିକେ ପରିହାସ
ପାଶେ ଥାଇ ନ ଜାଣିଲେ ରେବତୀର ଶିଷ୍ୟ ।
ପଂକ୍ତି :—୪୪୫—୪୪୬

ଗଉଡ଼ଙ୍କୁ ନଗ୍ନ ରୂପରେ ଦେଖିବା ମାଣିକାର ପ୍ରଥମ ଉଦ୍ଦେଶ୍ୟ । ତା'ପରେ ସେମାନଙ୍କର ଇଚ୍ଛାହେଲେ ଦହି ଦୁଧ ଖାଇ ପାରନ୍ତି; କିନ୍ତୁ ମାଣିକାର ଉଭୟ ଆଶା ସଫଳ ହୋଇଛି । ଜଗନ୍ନାଥ ମାଗିବାପରେ ଦହି, ଦୁଧ, ଛେନା, ଗୋଟିକା, ମାଣିକା ତାଙ୍କ ପାଖକୁ ବଢ଼ାଇ ଦେଇଛି ଓ ମନୋହର କଲାବେଳେ 'ପ୍ରେମ ଭରେ ଶ୍ରୀମୁଖକୁ ଚାହିଁ ରହିଛି ।'

କିନ୍ତୁ ଏତିକିରେ ମଧ୍ୟ ମାଣିକା ମନ ତୃପ୍ତ ହେଉନାହିଁ । ଭ୍ରୂକଟାକ୍ଷ, ଦୃଷ୍ଟି ବିନିମୟ ପରେ ଜାତ ହୋଇଛି ପୁଲକ । କାରଣ ଶୃଙ୍ଗାରକତା ତା'ଠାରେ ପ୍ରକଟିତ ହୋଇଛି, ରତି ଯାହାର ସ୍ଥାୟୀଭାବ । କମ୍ପନ ହେତୁ ଦହି ଦେଲାବେଳେ ଅଧିକ ଦହି ଜଗନ୍ନାଥଙ୍କ ପାଦ ଉପରେ ପଡ଼ିଲା । ସୁଯୋଗ ପାଇ ମାଣିକା ସେହି କୋମଳ ପଦ୍ମପାଦକୁ ନିଜ ବକ୍ଷରେ ଜଡ଼ିତ କରି ଆଲିଙ୍ଗନ କଲା ଏବଂ ଅନ୍ତର୍ଯ୍ୟାମୀ ପ୍ରଭୁ ସେହି ପୟର ମାଧ୍ୟମରେ କାମଭାବ ପୂରଣ କଲେ (୧୩) ।

ଏତିକିରେ ମଧ୍ୟ ସେମାନଙ୍କର ହସ କୌତୁକ ଶେଷ ହୋଇନି । ଦହି ଖାଇସାରି ମାଣିକା ମୁହଁକୁ ଚାହିଁ ଜଗନ୍ନାଥ 'ଏଉଡ଼ି ମାରି କହିଲେ 'ପେଟ ପୂରିଲାନି' ଏବଂ ମାଣିକା ପଇସା ମାଗିଲା ବେଳେ ଜଗନ୍ନାଥ ନିସଉଁ ଉତ୍ତର ଦେଇଛନ୍ତି "ଖାଇଲେ ଦିଅନ୍ତି ବୋଲି ଆମ୍ଭେ ତା' ଜାଣୁ କି ?" ଏସବୁ ମଧ୍ୟରେ ଅଛି ଚଟୁଳ ରସିକତା ହିଁ ନିହିତ ।

ତା'ପରେ କାଳିଆ ଗଉଡ଼ଙ୍କ ପ୍ରତି ସ୍ୱତଃ ପ୍ରବୃତ୍ତ ମାଣିକାର ଆସକ୍ତି ଜନ୍ମିଛି ଏବଂ ସେତେବେଳେ ତା' ମନରୁ ଧନର ଲୋଭ ଦୂର ହୋଇ ସାରିଛି । ମୂଲ୍ୟ ବନ୍ଧା ନରଖି ବରଂ ସ୍ୱୟଂ ଗଉଡ଼ଙ୍କୁ ପାଇବାପାଇଁ ସେ ଇଚ୍ଛୁକ ହୋଇଛି

---

୧୩ । ତାହାର ମଦନ ବାଞ୍ଛା ପୂରାଇବା ପାଇଁ
ସେହି ପୟରେ ତାହାଙ୍କୁ ପୁଂସଭାବ ଦେଇ
ହାସ୍ୟ ରସ ଭାବ ତହିଁ ପୁଲକ ଚୁମ୍ବନ
ସେହି ପାଦେ ମାଣିକାର ତୋଷ ହେଲା ମନ ।
(ପଂକ୍ତି :— ୪୬୩ – ୪୬୬)

(୧୪) ରାଜା ଯେତେବେଳେ ପ୍ରସନ୍ନ ହୋଇ ମାଣିକାକୁ କଛି ପୁରସ୍କାର ପ୍ରଦାନ କରିବାକୁ ଇଚ୍ଛା କରିଛନ୍ତି ସେତେବେଳେ ମଧ୍ୟ ସେ ଧନ ଗ୍ରହଣ କରିବାର ଅନିଚ୍ଛା ପ୍ରକାଶ କରିଛି (୧୫) । ନିଜେ ରହିବା ପାଇଁ ଖଣ୍ଡିଏ ଯାଗା ନେଇଛି ସିନା ବିପୁଳ ଧନ ସମ୍ପତ୍ତି ପାଇବା ପ୍ରଲୋଭନ ତା' ମନରେ ଜାଗ୍ରତ ହୋଇନି ।

କବି ପୁରୁଷୋତ୍ତମ ଦାସଙ୍କ ଲେଖନୀରେ ମାଣିକା ସାଧାରଣ ଏକ ଗଉଡୁଣୀ ଗ୍ରାମ୍ୟ ନାରୀ ହେଲେ ହେଁ ଭକ୍ତି ଓ ପ୍ରୀତିରସରେ ପରିପୂର୍ଣ୍ଣା, ଅଖଣ୍ଡ ଭକ୍ତିମତ୍ତା ପାଇଁ ସ୍ୱୟଂ ଜଗନ୍ନାଥଙ୍କ ସହିତ ହାସ କୌତୁକ ଓ ସମ୍ଭୋଗ କରିବାପାଇଁ ସମର୍ଥ ହୋଇଛି ଏବଂ ଜଗନ୍ନାଥ ମଧ୍ୟ ମାଣିକା ହାତରୁ ଦହିଖାଇ ତା' ମନସ୍କାମନା ପୂର୍ଣ୍ଣ କରିଛନ୍ତି ।

ପୁରୁଷୋତ୍ତମ ଦାସଙ୍କ କାବ୍ୟରେ ମାଣିକା ଯେପରି ଚରମ ସାର୍ଥକତା ଲାଭ କରିଛି ଅନ୍ୟ ସାହିତ୍ୟକମାନେ ମାଣିକାକୁ ନିଜ ନିଜର ସାହିତ୍ୟ ଜଗତ ମଧ୍ୟରେ ପ୍ରବେଶ କରାଇ ଥିଲେ ହେଁ ଏତାଦୃଶ ସଫଳତା ଅର୍ଜନ କରିପାରି ନାହାନ୍ତି ।

ପୁରୁଷୋତ୍ତମ ଦାସଙ୍କ ଓଡ଼ିଆ 'କାଞ୍ଚିକାବେରୀ' କାବ୍ୟର ପୂରାପୂରି ଅନୁକରଣ ଓ ଅନୁସରଣରେ ବଙ୍ଗଳାରେ ଲିଖିତ ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ 'କାଞ୍ଚିକାବେରୀ' ମାଣିକା ସମାନ ଭୂମିକାରେ ଅବତୀର୍ଣ୍ଣା । ରଙ୍ଗଲାଲ ଦାବୀ କରିଛନ୍ତି ଯେ ଓଡ଼ିଆ କାବ୍ୟକୁ ସେ ଅନୁବାଦ କରିନାହାନ୍ତି, କେବଳ ଗୋଟିଏ ଦୁଇଟି ସ୍ଥାନରେ ହୁଏତ ସାଦୃଶ୍ୟ ଥାଇପାରେ ।

ବାସ୍ତବରେ ଏହା ସତ୍ୟ ନୁହେଁ । ଡ଼ଃ. ସୁକୁମାର ସେନ୍ ଯାହା କହିଛନ୍ତି ଓଡ଼ିଆ କାବ୍ୟଟିକୁ ରଙ୍ଗଲାଲ ସ୍ଥାନ୍ କାଳରେ ଉପଯୋଗୀ କରି ସଜାଇଛନ୍ତି ତାହାହିଁ ସତ୍ୟ (୧୬) । ଏପରିକି ବହୁ କ୍ଷେତ୍ରରେ ଆକ୍ଷରିକ ଅନୁବାଦ ମଧ୍ୟ

---

୧୪ । ନୋହିଲେ ମୁଁ ସଙ୍ଗେ ଯିବି ମତେ ଆଜ୍ଞା ହେଉ ।
ଓଡ଼ିଆ – କାଞ୍ଚିକାବେରୀ—ପଂକ୍ତି ;—୫୦୭

୧୫ । ମାଣିକା ବୋଇଲା କିସ ମାଗିବି ତୁମ୍ଭଙ୍କୁ
ମାଗିଥିଲେ ମାଗିଥା'ନ୍ତି ବେନି ଠାକୁରଙ୍କୁ । ଓ: କା: କା: ପଂ:—୫୬୦

୧୬ । କାଞ୍ଚିକାବେରୀ—ଭୂମିକା ପୃଷ୍ଠା ୧।/° ଡଃ. ସୁକୁମାର ସେନ୍ ।

କରିଛନ୍ତି । ମାଣିକାର ରୂପ ଗୁଣ ଓ ଜଗନ୍ନାଥଙ୍କ ସହିତ ହସ କୌତୁକ ପ୍ରାୟତଃ ସମାନ । ମାଣିକା ଯେ ରାଧା, ଏଇ ପ୍ରଶ୍ନଟି ଆଣିବା ପାଇଁ ରଙ୍ଗଲାଲ ମଧ୍ୟ ତାହାର ବାପାର ନାମ ବୃଷ ବେଢେହର ଓ ସ୍ୱାମୀର ନାମ ଚନ୍ଦ୍ର ବେଢୁହର ରଖିଛନ୍ତି । ବଙ୍ଗଳା କାବ୍ୟରେ ମଧ୍ୟ ମାଣିକା ପ୍ରଥମ ଦର୍ଶନରେ ଜଗନ୍ନାଥଙ୍କ ପ୍ରତି ମୁଗ୍ଧ ହୋଇଛି ଏବଂ ମନେ ମନେ ଚିନ୍ତା କରିଛି ପଇସା ନ ଦିଅନ୍ତୁ ବରଂ ତା'ଠାରୁ ଦହି ଖାଇ ଯାଆନ୍ତୁ, ଯାହାଦ୍ୱାରା ସେ ମନ ପୂରାଇ ଦେଖି ପାରିବ (୧୭)। କେବଳ ସେତିକ ନୁହେଁ ଉଭୟଙ୍କ କଥୋପକଥନ ଓଡ଼ିଆ କାଞ୍ଚିକାବେରୀ କାବ୍ୟର ପ୍ରତ୍ୟେକ ପଂକ୍ତି ସହିତ ସମାନ । ଅଳ୍ପ କ୍ଷୀର ଘରୁ ଆଣି ପାଣି ମିଶାଇ ଅଧିକ କରିବା କଥା ଜଗନ୍ନାଥ ମାଣିକାକୁ ଓଡ଼ିଆ କାବ୍ୟରେ ଯେପରି କହିଛନ୍ତି ଠିକ୍ ସେହିପରି ବଙ୍ଗଳା କାଞ୍ଚିକାବେରୀରେ ମଧ୍ୟ ପାଏ କ୍ଷୀର ଆଣି ସେରେ କରିବା ବିଷୟ ଜଗନ୍ନାଥ ମାଣିକାକୁ କହିଛନ୍ତି । ମାଣିକା ମଧ୍ୟ "ଛନ୍ଦ ନ ଶିଖିଲେ ଅଯୋଗ୍ୟ ବୋଲାଇ" ଯେପରି ସେଠି କହିଛି ଏ କାବ୍ୟରେ ମଧ୍ୟ ସେହିପରି ସ୍ୱୀକାର କରିଛି (୧୮)। ମୋଟ ଉପରେ ମାଣିକାର ଭୂମିକା ଆଲୋଚନା କଲାବେଳେ କବିଙ୍କର ମୌଳିକ ଚିନ୍ତାଧାରା ପରିଲକ୍ଷିତ ହୁଏ ନାହିଁ ।

ଏଇ ପ୍ରସଙ୍ଗରେ ଗୋଟିଏ ଦୁଇଟି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଓଡ଼ିଆ କାଞ୍ଚିକାବେରୀରେ ଜଗନ୍ନାଥ ନିଜର ବଂଶଲତା ଓ କାଞ୍ଚିଯାତ୍ରାର ଉଦ୍ଦେଶ୍ୟ ବର୍ଣ୍ଣନା କଲାବେଳେ ମାଣିକାଠାରେ ବିଳମ୍ବ ହେଉଛି ବୋଲି କେବଳ କହିଛନ୍ତି । ବଙ୍ଗଳା କାବ୍ୟରେ ବିଳମ୍ବ ହେବାର କାରଣ ମାଣିକାର ଆକର୍ଷଣ ବୋଲି ଜଗନ୍ନାଥ ନିଜେ ପ୍ରକାଶ କରିଛନ୍ତି (୧୯)। ଏଥିରୁ ମାଣିକା ପ୍ରତି

---

୧୭ । ଲଡ଼ ନାଇ ଦେଯୁ ପାଛେ ଭୋଜନ କରିଯେ
ଏପ ଦୋକ ହେରିବ ରୂପ ନୟନ ଭରିଯେ
(ବଙ୍ଗଳା 'କାଞ୍ଚିକାବେରୀ' ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ—ପୃ-୧୦୫)

୧୮ । ହାସିୟା ମାଣିକା କହେ ଆମେବାକ୍ ଛଲ
ଯୁବାଜାତିର ବୃତ୍ତି ପ୍ରଭୁ ! କେବା ଘୁଡ଼େ ବଲ ?
(ବ: କା: କା—ପୃ-୧୦୫)

୧୯ । ଯାଇତେଛି ଦୁଇ ଭାଇ ସକଲେର୍ ଆଗେ
ଏ ଖାନେ ବିଲମ୍ବ ତବ ନବ ଅନୁରାଗେ । (ବ:କା:କା:—ପୃ ୧୦୭)

ଜଗନ୍ନାଥଙ୍କର ଥିବା ପ୍ରେମଭାବ ସ୍ପଷ୍ଟ ପ୍ରକାଶିତ ହୁଏ । କିନ୍ତୁ ଓଡ଼ିଆ କାଞ୍ଚିକାବେରୀରେ ଜଗନ୍ନାଥ ପ୍ରୀତିସ୍ନାପାତ୍ର ହୋଇଥିଲେ ହେଁ କଳ୍ପିତ୍ର ମନେ ହୋଇଛନ୍ତି ।

କିନ୍ତୁ ଓଡ଼ିଆ କାଞ୍ଚିକାବେରୀରେ ମାଣିକ ଦହି ଦେବାବେଳେ କାଳିଆ ଠାକୁର ତାଙ୍କ ପଦ୍ମର ମାଧ୍ୟମରେ ଯେପରି ପୁଂଭାବ ପ୍ରଦାନକରି ମାଣିକାରପିପାସା ଚରିତାର୍ଥ କରିଛନ୍ତି ରଙ୍ଗଲାଲଙ୍କ କାବ୍ୟରେ ସେପରି ହୋଇନାହିଁ । ପୁରୁଷୋତ୍ତମ ଦାସଙ୍କ କାବ୍ୟରେ ବିଧାରୂପୀ ମାଣିକା ଯେଉଁକାପ୍ନା ପ୍ରୀତିର ବଶବର୍ତ୍ତୀହୋଇ ସଂଭୋଗ ପିପାସା କେତେକାଂଶରେ ପୂରଣ କରିଛି । ରଙ୍ଗଲାଲ ମାଣିକାଠାରେ କେବଳ କମନ ଓ ବେପଥୁ ସୃଷ୍ଟି କରିଛନ୍ତି ସିନା ତା'ର ଆଶା ପୂରଣ କରିପାରିନାହାନ୍ତି (୨୦) ।

ମୋଟ ଉପରେ ବିଚାର କଲେ ଉଭୟଙ୍କ ମାଣିକା ସମାନ ବ୍ୟକ୍ତିତ୍ୱର ପ୍ରତୀକ ।

ଏତେଦ୍‌ଭିନ୍ନ ସମଧର୍ମୀ ଆଉ ଗୋଟିଏ କାବ୍ୟ ଆମର ଦୃଷ୍ଟିଗୋଚର ହୁଏ । ସେ କାବ୍ୟଟି ହେଉଛି କପିଳେଶ୍ୱର ବିଦ୍ୟାଭୂଷଣ ଲିଖିତ 'କାଞ୍ଚିକାବେରୀ ଯୁଦ୍ଧ' । ଏହାର ପୂର୍ବୋକ୍ତ କାବ୍ୟଦୁଇଟି ସହିତ ଅନେକ ମେଳ ଥିଲେ ହେଁ ମାଣିକାକୁ ଆମେ କାହିଁକି ପୃଥକ୍ ଭୂମିକାରେ ଅବତରଣ କରିଥିବାର ଲକ୍ଷ୍ୟକରୁ । ଅବଶ୍ୟ ପୂର୍ବୋକ୍ତ ମାଣିକାପରି ଏ ମଧ୍ୟ ଉତ୍ତମ ଭକ୍ତ । ପ୍ରତିଦିନ ପସରାଧରି ଗଲାବେଳେ ଶ୍ରୀ ଜଗନ୍ନାଥଙ୍କୁ ମନେ ମନେ ଧ୍ୟାନ କରେ ଓ ବିକ୍ରି ଦ୍ରବ୍ୟକୁ ପ୍ରଥମେ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଅର୍ପଣ କରେ । ତେଣୁ ଭାବଗ୍ରାହୀ ପ୍ରଭୁ ତା'ର ବାଞ୍ଛା ପୂରଣ କରିଛନ୍ତି ଓ ନିଜେ ରାଜା ମାଣିକାର କିଙ୍କର ହେବାକୁ ଇଚ୍ଛା କରିଛନ୍ତି ।

କିନ୍ତୁ ଏ ମାଣିକା, ପ୍ରଣୟ ପ୍ରସଙ୍ଗରେ ପୂର୍ବୋକ୍ତ ମାଣିକା ସହିତ ସମାନ ହୋଇ ପାରିନ । ପ୍ରଥମ ଦର୍ଶନରେ ଠାକୁର ଦୁହିଙ୍କର ଚୋରା ଚୂପ ଦେଖି

---

୨୦—ସାମାଲିତେ ନା ପାରିଲ, ଲଜ୍ଜା ଗେଲ ଦୂରେ
ପୁଲକିତ ଚିବୁରହୁ ପ୍ରଣୟ ଅଙ୍କୁରେ
କରେ କର ପରଶେ ହରଷେ ମୁଗଧ ମନ
ମହାତଲେ ପଡ଼େ କ୍ଷୀର ଚେକପୁ ଭାଜନ ।
( ବଙ୍ଗଳା—କାଞ୍ଚିକାବେରୀ ପୃ-୧ )

ମାଣିକା ଅବଶ୍ୟ ମୋହିତ ହୋଇଛି ଓ ସକଳ ସମ୍ପତ୍ତି ତ୍ୟାଗକରି ତାଙ୍କର ପଦ ବନ୍ଦନା କରିବାର ଇଚ୍ଛା ତା'ଠାରେ ଜାତ ହୋଇଛି (୨୧) । କିନ୍ତୁ ପରବର୍ତ୍ତୀ କ୍ଷେତ୍ରରେ ସକଳ ସମ୍ପତ୍ତି ତ୍ୟାଗକରିବା ଦୂରେ ଥାଉ ଦହିର ମୂଲ୍ୟ ପାଇବା ପାଇଁ ବ୍ୟସ୍ତହୋଇ ପଡ଼ିଛି । ଏ କ୍ଷେତ୍ରରେ ଜଗନ୍ନାଥ ଓ ମାଣିକାର ସମ୍ପର୍କ ଗ୍ରାହକ ଓ ବିକ୍ରେତାର ସମ୍ବନ୍ଧ ମଧ୍ୟରେ ଆବଦ୍ଧ ହୋଇ ରହିଛି । ତେଣୁକରି ରାମକୃଷ୍ଣଙ୍କୁ ଦହି ଦେଲାବେଳେ "ଗଣ୍ଠିବନ୍ଧା କରି କଉଡ଼ି ଦିଅ" କହି ସେମାନଙ୍କୁ ସତର୍କ କରାଇ ଦେଇଛି ଏବଂ ଖାଇସାରି ଜଗନ୍ନାଥ ବିଦାୟ ନେଲାବେଳେ ହିସାବରେ ଯାହା ମୂଲ୍ୟ ହୋଇଲା ନେବାପାଇଁ ଦାବୀ କରିଛି । ପୁରୁଷୋତ୍ତମଙ୍କ କାଞ୍ଚିକାବେରୀ କାବ୍ୟରେ ରସିକା ମାଣିକା କାଳିଆ ରାଉତଙ୍କ-ଠାରୁ ଘନଶ୍ୟାମର ଉତ୍ତର ପାଇବା ଯେପରି ଯଥାର୍ଥ ହୋଇଛି ଏଠାରେ କଳା ସିପାଇ ସାମାନ୍ୟ ପରିହାସ କରିଥିଲେ ହେଁ ସେପରି ବାସ୍ତବ ମଣ୍ଡନ ହେଉନ । ସିପାଇ ଖାଇଲେ କଉଡ଼ି ଦିଅନ୍ତି ନାହିଁ ଶୁଣି ମାଣିକା ବରଂ କାତର ହୋଇ ପଡ଼ିଛି । କାରଣ ଦହିର ମୂଲ ନ ପାଇବା ଦୁଃଖଠାରୁ ଶାଶୁ ନଣନ୍ଦଙ୍କ ଗଞ୍ଜଣା ତାକୁ ଅଧିକ ଭୟଭୀତ କରାଇଛି (୨୨) । ସେଥିପାଇଁ କଳାସିପାଇଙ୍କ ସାଙ୍ଗରେ ଯିବାପାଇଁ ଇଚ୍ଛା କରିଛି । ଏହାର କାରଣ ଗଞ୍ଜଣା ଶୁଣିବାର ଆଶଙ୍କା ହୋଇପାରେ ସିନା ପ୍ରୀତିର ଆକର୍ଷଣ ନୁହେଁ ।

କେବଳ ଏତିକି ନୁହେଁ, ଆହୁରି ଅନେକ ସ୍ଥଳରେ ମାଣିକାର ଧନ ଲୋଭ ସୂଚିତ ହୋଇଛି । କଳାସିପାଇ ଦେଇ ଯାଇଥିବା ମୁଦି ଦେଖି ତା'ର ସାଙ୍ଗମାନେ ମାଣିକା ବହୁଧନ ପାଇବ ଜାଣି ତାକୁ ଧନ୍ୟ ମନେ କରିଛନ୍ତି ଏବଂ ମାଣିକା ମଧ୍ୟ ଧନ ଲାଭ ଆଶାକରି 'ଶୁଭ ଅନୁକୂଳ' ହୋଇଛି ବୋଲି ହୃଦୟଙ୍ଗମ କରିଛି ।

---

୨୧—ସକଳ ସମ୍ପତ୍ତି ବରଜି, ଏହାଙ୍କ ପାଦେ ଥିବି ଭଜି ।

( 'କାଞ୍ଚିକାବେରୀ ଯୁଦ୍ଧ'—କପିଳେଶ୍ୱର ବିଦ୍ୟାଭୂଷଣ ପୃ-୨୧

୨୨—ନ ଦେଲେଁ ତୁମେ ଦହିର ମୂଲ, ମୋତେ ସଙ୍କଟରେ ପେଶାଇ ଗଲ ।
ନୋହିଲେ ତ'ଘରେ ରଖିବେ ନାହିଁ, କହିବେ ଅଇଲୁ କାହାକୁ ଦେଇ ।
ତହୁଁ ନାନା ଛିଦ୍ରମାନ ଖୋଜିବେ, ନଣନ୍ଦ ବିବସରେ ମୋତେ ଗଞ୍ଜିବେ ।
ଏଥିକୁ ତୁମ୍ଭେ ବିଚାର କର, ଯେପରି ନୋହିବ କଳଙ୍କ ମୋର ।
( କା: କା: ଯୁଦ୍ଧ ପୃ-୨୪ )

ମାଣିକା ଯାହା ମାଗିବ ତାହା ଦେବାପାଇଁ ରାଜା ପ୍ରସ୍ତୁତ ଥିଲେ ମଧ୍ୟ ମାଣିକା ସୁଯୋଗ ହରାଇ ଥିବାରୁ ଅନୁତାପ କରନ୍ତି । ପ୍ରଭୁ ଜଗନ୍ନାଥଙ୍କୁ ଚିହ୍ନି ପାରିଥିଲେ ସେ ଅଧିକ କଣ୍ଟ ମାଗିଥା'ନ୍ତା (୨୩) । ତୁଏତ ପ୍ରଭୁଙ୍କ ଦୟାରୁ ସେ ମୋକ୍ଷପଦ ମଧ୍ୟ ଲାଭକରି ପାରିଥା'ନ୍ତା (୨୪) ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ, ମାଣିକା ପ୍ରେମ ଭକ୍ତିର ଉପାସିକା ନ ହେଲେ ହେଁ ଭକ୍ତ ଶ୍ରେଷ୍ଠା । ପ୍ରତ୍ୟହ ଜଗନ୍ନାଥଙ୍କୁ ସ୍ମରଣ କରି ଦହି ବିକବାକୁ ଯିବା, ଜଗନ୍ନାଥ ତା'ଠାରୁ ଦହି ଖାଇବା, ମାଣିକାଠାରେ ରାଜା ଆନୁଗତ୍ୟ ସ୍ୱୀକାର କରିବା ଓ ମାଣିକାର ପରମପଦ ଭିକ୍ଷା କରିବାପାଇଁ ଇଚ୍ଛା ପ୍ରକାଶ କରିବା ଇତ୍ୟାଦି ମାଣିକାର ଭକ୍ତିମତ୍ତାର ପ୍ରମାଣ ଦିଏ । ଜଗନ୍ନାଥ ଓ ମାଣିକାର କଥୋପକଥନରୁ ମାଣିକା କାଳିଆ ରାଉତଙ୍କ ପ୍ରତି ପ୍ରେମାସକ୍ତ ହୋଇଥିବାର ସ୍ପଷ୍ଟ ସୂଚନା ନ ମିଳିଲେ ହେଁ ଦହିର ମୂଲ ପାଇବାପାଇଁ ମାଣିକାର ବ୍ୟାକୁଳତା ଓ ତଞ୍ଜଣା ଶୁଣିବାର ଉପ୍ର ପାର୍ଥିବତା ଦୃଷ୍ଟିରୁ ଖୁବ୍ ବାସ୍ତବ ମନେ ହୁଏ ।

୧୯୦୪ ମସିହାରେ ପ୍ରକାଶିତ ଭାଗୀରଥି ରଥଙ୍କ "ପଦ୍ମାବତୀ ପରିଣୟ ବା କାଞ୍ଚିକନ୍ୟା" କାବ୍ୟରେ ମାଣିକାକୁ ଭେଟିବା ପାଇଁ ଆମେ ଆଉ ଥରେ ସୁଯୋଗ ପାଉଁ । ସେ କାବ୍ୟଟିରେ ମାଣିକା ଭକ୍ତ ପ୍ରବରା ରାଧିକା ନୁହେଁ, ସାଧାରଣ ଏକ ଗ୍ରାମ୍ୟ ଗୋପାଙ୍ଗଣୀ । ଗ୍ରାହକଙ୍କୁ ଡାକ ଡାକ ଦହି, ଦୁଧ, ଛେନା ବିକିବା ତା'ର ଜୀବିକା । ଦଧି ବିକ୍ରୟର ଉପସ୍ଥାପିତ ହବନ୍ତି ଏଠାରେ ଉଦ୍ଧୀର୍ଣ୍ଣ ହୋଇଥିଲେ ହେଁ ମାଣିକା ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିନାହିଁ । କମଳାପାଇଁ ଜଗନ୍ନାଥ ଦହି କିଣିଲା ବେଳେ ରସିକତା କରି ଗୋପାଳ ବଧୂମାନଙ୍କୁ କହିଛନ୍ତି ଦୁଧ ଦେହରୁ ଲହୁଣୀ କାଢ଼ିନେବା ବିଦ୍ୟାଟି ତୁମମାନଙ୍କୁ ଆଦୌ ଜଣାନାହିଁ । ତା' ନ ହେଲେ ଦୁଧ କୁଷ୍ମାଣ୍ଡ ଫଳ ପରି ପାଣ୍ଡୁର ଦେଖା ଯାଆନ୍ତା କାହିଁକି ? ରସିକା ନାରୀମାନେ ତଦନୁରୂପ ରସିକତା

---

୨୩ । ମୋର ବୁଦ୍ଧି ନାହିଁ ଥିଲେ କମ୍ପା ମୁହିଁ ସିପାଇ ଦୁହିଙ୍କୁ ଜାଣି
ତାଙ୍କ ପାଖରୁ ସେ ଇଚ୍ଛାବର ନ ନଅନ୍ତି । (କା: କା: ଯୁ–ପୃ–୩୦)

୨୪ । ମାଗିଥିଲେ ପଦେ ମୁଁ ପରମପଦେ ବସିଥା'ନ୍ତି ଭୁଲିଗଲି ।
(କା: କା: ଯୁ—ପୃ—୨୯)

କରିବାକୁ ଭୁଲି ନାହାନ୍ତି । ପ୍ରତ୍ୟୁତ୍ତରରେ କହିଛନ୍ତି ହରିଦ୍ରା ରଙ୍ଗର ଶାଢ଼ୀ ପିନ୍ଧିଥିବା ମାଣିକାର ଦହି ହଳଦିଆ ଦିଶୁଛି । ତା'ଠାରୁ ଦହି କିଣନ୍ତୁ (୨୫) । ଏହି ଉକ୍ତି ମାଧ୍ୟମରେ ଗ୍ରାମ୍ୟ ନାରୀମାନଙ୍କର ଅନ୍ୟକୁ ବିଦ୍ରୂପ କରିବା ଛଳରେ ନିଜର ଚପଳତା ବ୍ୟକ୍ତ କରିବା ମନୋଭାବଟି ସୁସ୍ପଷ୍ଟ । ଯାହାହେଉ, ଜଗନ୍ନାଥ ମାଣିକାଠାରୁ ଦହି ଖାଇଛନ୍ତି ଓ ପଇସା ଦେଇ ନପାରି ନିଜର ନାଁ ଲେଖା ମୁଦିଟି ଦେଇଛନ୍ତି । ମାଣିକା ନିନ୍ଦା ଓ ଅପବାଦ ଭୟରେ ମୁଦିଟିକୁ ଗ୍ରହଣ କରିବାପାଇଁ ସଙ୍କୁଚିତା ହୋଇଛି (୨୬) । ମାଣିକା ମନା କରୁଥିବା ସତ୍ତ୍ୱେ ସେମାନେ ପଇସା ନ ଦେଇ ଅନ୍ତର୍ଦ୍ଧାନ ହୋଇ ଯାଇଛନ୍ତି ଓ ପରେ ରାଜା ମୁଦିକୁ ଚିହ୍ନିପାରି ମାଣିକାକୁ ଜାଗିର ଦେଇ ତା'ଠାରୁ ପ୍ରତି ବଦଳରେ ସେ ମୁଦିକୁ ଗ୍ରହଣ କରିଛନ୍ତି (୨୭) । ଏ ମାଣିକା ଜଗନ୍ନାଥଙ୍କ ପ୍ରେମ ଭକ୍ତ ବା ପ୍ରେମ ଭାବରେ ଆସକ୍ତ ହୋଇ ନାହିଁ ବା ଦହି ମୂଲ୍ୟ ପାଇବାପାଇଁ କଟାକ୍ଷ କରିନାହିଁ । କେବଳ ଅପବାଦ ଭୟରେ କାତର ହୋଇ ପଡ଼ିଛି ଏବଂ ଜାଗିର ଖଣ୍ଡିଏ ପାଇଲା ପରେ ସହଜରେ ମୁଦିଟି ପ୍ରଦାନ କରିଛି ।

ଏହିଁ କବିମାନଙ୍କ ବ୍ୟତୀତ ଅନ୍ୟାନ୍ୟ ଯେଉଁ କେତେ ଜଣ ସାହିତ୍ୟିକ ମାଣିକାକୁ ସାହିତ୍ୟ ଜଗତରେ ସ୍ଥାନ ଦେଇଛନ୍ତି ସେମାନେ ପ୍ରାୟତଃ ନାଟ୍ୟକାର । ଏମାନଙ୍କ ମଧ୍ୟରୁ ଊନବିଂଶ ଶତାବ୍ଦୀର ଲେଖକ ତଥା ନାଟ୍ୟକାର ରାମଶଙ୍କର ରାୟଙ୍କୁ ସ୍ମରଣ କରାଯାଇ ପାରେ ।

---

୨୫ । ଶୁକ୍ଳଶାଟୀ ଛଟା ପଡ଼ିବାରୁ ଘନା
ଦଧିକ ମଣ୍ଡିଲ ଯହିଁ
ହରିଦ୍ରା ବସନା ମାଣିକର ପାନ୍ଥ
କିଣନ୍ତୁ ହାରିଦ୍ର ଦଧି ।
(ପଦ୍ମାବତୀ ପରିଣୟ ବା କାଞ୍ଚିକନ୍ୟା—ଭାଗୀରଥି ରଥ ପୃ—୨୩)

୨୬ । ଭଣିଲ ଚତୁରୀ ଅଙ୍ଗୁରୀପୂକର ମୂଲ୍ୟ ମୁଁ ନୁହେଁ କାତର
ଦଧି ବଦଳରେ ମୁଦ୍ରିକା ମୋ ପକ୍ଷେ ଅସତ୍ୟ ବାଦ ପସର ।
(ପ. ପ. ବା. କା. କ.—ପୃ—୨୪)

୨୭ । ଜାଗିର ଏ ପଲ୍ଲୀ ଦେଇ ମାଣିକକୁ
ପ୍ରେମ ମୁଦ୍ର ନେଲୁ ମାଗି । (ପ. ପ. ବା, କା. କ.—ପୃ—୨୬)

ରାମଶଙ୍କର ରାୟଙ୍କ କାଞ୍ଚୀକାବେରୀ ନାଟକରେ ଆମେ ଯେଉଁ ମାଣିକାକୁ ଭେଟୁ ସେ ପୂର୍ବୋକ୍ତ କାବ୍ୟମାନଙ୍କର ମାଣିକାପରି ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିନାହାଁନ୍ତି । ରାମଶଙ୍କରଙ୍କ ଦୃଷ୍ଟିରେ ମାଣିକା ଶୁଦ୍ଧ ରାଗାନୁଗା ଭକ୍ତି ମାର୍ଗର ଉପାସିକା ରାଧିକା ନୁହେଁ, ଅବଶ୍ୟ ତା'ର ପିତାର ନାମ ବୃଷଭ ବେହେରା ରଖାଯାଇଛି । ଓଡ଼ିଆ 'କାଞ୍ଚୀକାବେରୀ' କାବ୍ୟର ମାଣିକାପରି କାଞ୍ଚୀକାବେରୀ ନାଟକରେ ଥିବା ମାଣିକାର ବଡ଼ଠାକୁରଙ୍କ ପ୍ରତି ସ୍ୱତନ୍ତ୍ର ଆସକ୍ତି ନାହିଁ । ଜଗନ୍ନାଥ ଯଶୋଦାଙ୍କ ପାଖରେ ରହି ପ୍ରତିପାଳିତ ହୋଇଥିବା ବିଷୟ ଶୁଣି ମଧ୍ୟ ମାଣିକା ସେମାନଙ୍କୁ ଚିହ୍ନିପାରିନ । ଏପରିକି ରାଜା ପୁରୁଷୋତ୍ତମ ଦେବ ଓ ଦାସ ସୁଆରଙ୍କର କଥୋପକଥନ ମାଧ୍ୟମରେ ସୁଦ୍ଧା ମାଣିକା ସେମାନଙ୍କ ସ୍ୱରୂପ ସମ୍ବନ୍ଧରେ ଅବଗତ ହୋଇପାରିନି । ବରଂ ଦହିର ମୂଲ୍ୟ ପାଇବା ପାଇଁ ଆଗ୍ରହୀ ହୋଇ ପଡ଼ିଛି । ରାଜା ମାଣିକାଠାରୁ ବଡ଼ଠାକୁରଙ୍କ ଖବର ଶୁଣିବାକୁ ବ୍ୟଗ୍ର ଥିଲାବେଳେ 'ମୋତେ ବିଦାକର' କହି ମାଣିକା ଅସ୍ଥିର ହୋଇ ଉଠିଛି ।

ଦାସସୁଆରଠାରୁ ବଡ଼ଠାକୁରଙ୍କ ପରିଚୟ ପାଇ ମାଣିକା ଖୁସି ହୋଇଥିଲେ ହେଁ ଯାଚନା କରିବାକୁ ଭୁଲିନି । "ଯେବେ ମହାପ୍ରଭୁ ଖାଇଛନ୍ତି ତେବେ ମୋର ଆଉ କେଉଁ କଥାକୁ ବାଞ୍ଛା ?" ଖାଲି ଏତିକି ଏହା ସମସ୍ତେ ଜାଣନ୍ତୁ (୨୮) । ଶ୍ରେଷ୍ଠ ଭକ୍ତ ହିସାବରେ ମାଣିକା ଯେ ନିଜର ପରିଚିତ ଓ ସ୍ୱୀକୃତି ଚାହିଁଛି ଏହି ଉକ୍ତିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । 'ନାଟକ'ର ମାଣିକାଠାରେ ଭକ୍ତର ଅହଂ ପ୍ରଚ୍ଛନ୍ନ ଭାବେ ରହିଥିବା ସ୍ଥଳେ କାବ୍ୟର ମାଣିକାଠାରେ ହିଁ ଦାସ୍ୟଭାବ ପ୍ରକାଶିତ । ବଡ଼ଠାକୁରଙ୍କ ପାଦଧରି ବନ୍ଦନା କରିବା ଓ ତାଙ୍କ ସଙ୍ଗରେ ଯିବାର ଅଭିପ୍ସାରୁ ଏହା ସୁସ୍ପଷ୍ଟ ହୁଏ ।

ପୁରୁଷୋତ୍ତମ ଦେବ କାଞ୍ଚୀ ଉଦ୍ଦେଶ୍ୟରେ ଅଭିଯାନ କରିଥିବା ଘଟଣାକୁ ଅବଲମ୍ବନ କରି ଆମ ସାହିତ୍ୟରେ ଆଉ କେତୋଟି ନାଟକ ରଚିତ ହୋଇଥିବା ଲକ୍ଷ୍ୟ କରାଯାଏ । ପୁରୁଷୋତ୍ତମ ଦେବ ନାଟକରେ ଗୋଦାବରୀଶ ମିଶ୍ର ମାଣିକାର ଭୂମିକାକୁ ପୁରାପୁରି ଅସ୍ୱୀକାର କରିଛନ୍ତି ।

କିନ୍ତୁ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ରଚିତ ଅଭିଯାନ ନାଟକରେ ମାଣିକା ଗୌଣ ସ୍ଥାନ ଅଧିକାର କରିଛି । କାଞ୍ଚୀକାବେରୀ ନାଟକପରି

---

୨୮— 'କାଞ୍ଚୀକାବେରୀ'—ରାମଶଙ୍କର ଗ୍ରନ୍ଥାବଳୀ—ପୃ-୫୨

ଏଥିରେ ମଧ୍ୟ ମାଣିକାଠାରୁ ବଡ଼ଠାକୁର ଦହି ଖାଇବାର ପ୍ରତ୍ୟକ୍ଷ ଦୃଶ୍ୟନାହିଁ; ବର୍ଣ୍ଣନା ମଧ୍ୟ ଅତି ନିଷ୍ପ୍ରଭ ମନେହୁଏ । ଏ ନାଟକରେ ମାଣିକା ବୃଷଭ ଦେବେହେରାର କନ୍ୟା ନୁହେଁ କିମ୍ବା ରାଧାକୃଷ୍ଣଙ୍କ ପରମ ଭକ୍ତର ଉପାସିକା ନୁହେଁ । ରାଜାଙ୍କ ପାଖରେ ମୁଦିର ଉପସ୍ଥାପନା ପରେ ରାଜାଙ୍କର ପ୍ରତ୍ୟୟ ହୋଇଛି ଯେ ସେ ମୁଦି ସ୍ୱୟଂ ବଡ଼ଠାକୁରଙ୍କର । ଏକଥା ଶୁଣି ମଧ୍ୟ ମାଣିକାର କୌଣସି ପ୍ରତିକ୍ରିୟା ଦେଖା ଯାଇନାହିଁ । 'କାଞ୍ଚିକାବେରୀ' ନାଟକରେ ମାଣିକାଠାରୁ ବଡଠାକୁର ଦହି ଖାଇଥିବା ହେତୁ ମାଣିକା ଭୂମି ଯାଚନା କରିଥିଲେ ହେଁ ନିଜକୁ ଧନ୍ୟ ମନେ କରିଛି ଓ ଅତି ଖୁସି ହୋଇଛି । କିନ୍ତୁ ଅଭିଯାନରେ ମାଣିକା ତୃତୀୟ ପୁରୁଷ । ରାଜା ଖୁସି ହୋଇ ନିଜେ ମାଣିକାକୁ ପାଟଣା ଦାନ କରିଛନ୍ତି ସିନା ତା' ନିଜର କୌଣସି ପ୍ରତିକ୍ରିୟା ଦେଖା ଦେଇନ ।

ଆଧୁନିକ ସାହିତ୍ୟର ସ୍ରଷ୍ଟା ରାଧାନାଥ ମଧ୍ୟ ଚିଲିକାରେ ମାଣିକାକୁଁ ସ୍ମରଣ କରିଛନ୍ତି । ମାଣିକା ବିଷୟରେ ମାତ୍ର ଚାରୋଟି ପଂକ୍ତି ଲେଖିଥିଲେ ହେଁ ସେଇ ସ୍ୱଳ୍ପ ପରିସର ମଧ୍ୟରେ ସେ ମାଣିକାକୁ କିଂବଦନ୍ତୀ ମଧ୍ୟରୁ ଆଣି 'ଇତିହାସ'ର ଇଲାକାରେ ପ୍ରବେଶ କରାଇ ପାରିଛନ୍ତି (୨୯) ।

ଜଗନ୍ନାଥଙ୍କ ଯୁଦ୍ଧଯାତ୍ରା ଓ ମାଣିକ ଉପାଖ୍ୟାନକୁ କିଂବଦନ୍ତୀ ସତ୍ୟ ଭାବରେ ଗ୍ରହଣକରି ନେଇଥିଲେ ହେଁ ପଣ୍ଡିତ ନୀଳକଣ୍ଠ ମାଣିକ କାହାଣୀକୁ ବିଭିନ୍ନ ଦିଗରୁ ବିଚାରକରି ଏହା ଭକ୍ତମାନଙ୍କର ନିହାତି ଏକ ମନଗଢ଼ା କଥା ବୋଲି ମତ ବ୍ୟକ୍ତ କରିଛନ୍ତି (୩୦) ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ମାଣିକା, ଇତିହାସ, କିଂବଦନ୍ତୀ ଓ ସାହିତ୍ୟର ଚଉହଦିରେ ପ୍ରବେଶ କରିପାରିଛି । କେତେବେଳେ ସେ

---

୨୯—ଇତିହାସ ରଙ୍ଗସ୍ଥଳୀ ତୁ ଚିଲିକା
ତୋର ତଟରେ ପରା ଶ୍ରୀମନ୍ତୀ ମାଣିକା
ହସ୍ତେ ଭୁଞ୍ଜିଥିଲେ ସାଦରେ ଲବଣୀ
ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି ।
( ଚିଲିକା, ରାଧାନାଥ ରାୟ—ପଂକ୍ତି—୩୬୧—୩୬୪ )

୩୦—ଓଡ଼ିଆ ସାହିତ୍ୟର କ୍ରମପରିଣାମ ଦ୍ୱିତୀୟ ଭାଗ—
(ନୀଳକଣ୍ଠ ଗ୍ରନ୍ଥାବଳୀ—ତୃତୀୟ ଖଣ୍ଡ—ପୃଷ୍ଠା-୨୦୭—୨୩୮)

ସରଳା ପଲ୍ଲୀବାଳା, ଶାଶୁ ନଣନ୍ଦର ଗଞ୍ଜଣା ଓ ସାମାଜିକ ଭୟରେ ସେ ଭୟଭୀତା । ଆଉ କେତେବେଳେ ସେଇ ଗ୍ରାମ୍ୟ ସାରଲ୍ୟ ଭିତରେ ପ୍ରୀତି ପ୍ରବଣତା ମଧ୍ୟ ପ୍ରକଟିତ । ସମସ୍ତ ଗଞ୍ଜଣା ଓ ନିନ୍ଦାକୁ ଭ୍ରୂକ୍ଷେପ ନକରି ପ୍ରଣୟୀର ସହଗାମୀ ହେବାକୁ ସେ ତତ୍ପର । ସେହି ମାଣିକ ପୁଣି କେତେବେଳେ ହୋଇଛି ଭକ୍ତ ଶ୍ରେଷ୍ଠା । ଭଗବାନଙ୍କ ସମ୍ବନ୍ଧରେ ତାତ୍ତ୍ୱିକ ଜ୍ଞାନ ଅର୍ଜନ ନକରି କେବଳ ପ୍ରେମ ଭକ୍ତିରେ ଭଗବାନଙ୍କ ସହିତ ଲୀନ ହୋଇଯିବାର ପିପାସା ତା'ଠାରେ ଜାଗିଛି ।

ପୁରୁଷୋତ୍ତମଙ୍କ କାଞ୍ଚିଯାତ୍ରାଠାରୁ ଆଜି ପର୍ଯ୍ୟନ୍ତ ସେ ସମ୍ବନ୍ଧରେ ଯେତେ ସାହିତ୍ୟ ସୃଷ୍ଟି ହୋଇଛି ସେ ସବୁକୁ ଲକ୍ଷ୍ୟକଲେ ଜଣାଯାଏ କ୍ରମାନ୍ୱୟରେ ମାଣିକ ଚରିତ୍ରରେ ମାନବୀ ରୂପ ପ୍ରକଟିତ ହୋଇଛି ।

ପ୍ରାଚୀନ ଯୁଗରେ ଧର୍ମ ହିଁ ଥିଲା ମାନବର ସର୍ବସ୍ୱ; ତେଣୁକରି ସେ କାଳର ସାହିତ୍ୟ ସେହିପରି ଅଦ୍ଭୁତ ମହିମାରେ ମଣ୍ଡିତ ହୋଇଥିଲା । ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଧର୍ମର ବିଭୂତି ଦେଇ ପ୍ରତିପନ୍ନ କରାଯାଉଥିଲା । ତେଣୁ ପୁରୁଷୋତ୍ତମ ଦାସ ଓ ରଙ୍ଗଲାଲଙ୍କ କାଞ୍ଚିକାବେରୀ କାବ୍ୟରେ ମାଣିକ ଭକ୍ତର ବ୍ୟକ୍ତିତ୍ୱ ଧାରଣୀ କମଳା ରାଧାରୂପୀ; କିନ୍ତୁ ଊନବିଂଶ ଶତାବ୍ଦୀରୁ ବିଂଶ ଶତକର କବିକୁଳଙ୍କ ଦୃଷ୍ଟିରେ ମାଣିକ ଦେବୀ ଅପେକ୍ଷା ଅଧିକ ଭାବେ ମାନବୀ ଗୁଣ ସମ୍ପନ୍ନା । ଏଠି ଐଶ୍ୱରିକତା ଗୌଣ, ମାନବତା, ହିଁ ମୁଖ୍ୟ । ଆଧ୍ୟାତ୍ମିକତା ଅପେକ୍ଷା ନାରୀଭାବର ବାସ୍ତବତାକୁ କବି ପ୍ରଥମ ମୂଲ୍ୟ ଦେଇଛି । ସୁତରାଂ ଷୋଡ଼ଶ ଶତାବ୍ଦୀରୁ ବିଂଶଶତାବ୍ଦୀ ଯାଏ, ଆମ ସାହିତ୍ୟରେ ରୂପ ନେଇଥିବା ମାଣିକର ବ୍ୟକ୍ତିତ୍ୱ କ୍ରମ ବିବର୍ତ୍ତିତ ହୋଇଛି । ଏହା ଆମର ସାଂସ୍କୃତିକ ଭୂମିରେ ମୂଳୀଭୂତ ହୋଇ ରହିଥିବାରୁ ଶତ କି ଶତାବ୍ଦୀ ଧରି ସାରସ୍ୱତ ପୁରୁଷଗଣ ସ୍ୱମାର୍ଗରେ ତାହାର କଳ୍ପନା କରିଛନ୍ତି । ମାତ୍ର ମାଣିକ ଉପାଖ୍ୟାନଟିର ସମ୍ପର୍କରେ ପଣ୍ଡିତ ମାନଙ୍କର, ଯେପରି ମତ ହୋଇଛନ୍ତି ତାହା ହୁଏତ ଷୋଡ଼ଶ ଶତାବ୍ଦୀ କବି, ଯେଉଁମାନେ କି ମାଣିକର ଉପାଖ୍ୟାନକୁ କାବ୍ୟରେ ସଂଯୋଜିତ କରିଛନ୍ତି, ସେମାନଙ୍କ ପାଇଁ ଏକ ସତ୍ୟ ଉଲ୍ଲେଖ ହୋଇପାରେ କିନ୍ତୁ ଊନବିଂଶ ଓ ବିଂଶ ଶତକର ଯେଉଁ କବିମାନେ ମାଣିକ

ଘଟଣାକୁ କାବ୍ୟ କବିତାରେ ସ୍ଥାନ ଦେଇଛନ୍ତି, ସେମାନେ ତ ଭକ୍ତ ନୁହନ୍ତି । ତେଣୁ ଏହାକୁ ଭକ୍ତମାନଙ୍କର ଏକ ମନଗଢ଼ା କଥା ବୋଲି କୁହାଯାଇ ନପାରେ ।

ବରଂ ଡକ୍ଟର ମହତାବଙ୍କର 'ଓଡ଼ିଶା ଇତିହାସ' ମାଣିକା ଉପାଖ୍ୟାନକୁ ଯେଉଁ କିଂବଦନ୍ତୀର ଗୌରବ ଦେଇଛି ତାହା ହିଁ ସତ୍ୟ ଏବଂ ଏହି କିଂବଦନ୍ତୀକ ଉପକଥାଟି ଆମ ସାହିତ୍ୟ ଓ ସଂସ୍କୃତିକୁ କାଳକ୍ରମେ ପ୍ରଭାବିତ କରିଛି ।

## ଓଡ଼ିଆଣୀର ମନ ଓ ମନନ

ଗୋଟିଏ ପୂର୍ଣ୍ଣାଙ୍ଗ ସମାଜ ଓ ଗୋଟିଏ ପରିପୂର୍ଣ୍ଣ ପରିବାର ବିକାଶଶୀଳ ରାଷ୍ଟ୍ର ଗଠନରେ ଯେଉଁ ଅଂଶ ଗ୍ରହଣ କରିଥାଏ, ଅନ୍ୟ କୌଣସି ଅବଲମ୍ବନ ତା'ର ସମକକ୍ଷ ହୋଇ ପାରେନା । ସମାଜ ପାଇଁ ବ୍ୟକ୍ତି, କିନ୍ତୁ ପରିବାରପାଇଁ କେବଳ ବ୍ୟକ୍ତି ନୁହେଁ ଅନ୍ୟ ଗୋଟିଏ ଅଙ୍ଗର ଆବଶ୍ୟକତା ନିହାତି ମୂଲ୍ୟବାନ । ପୁରୁଷ ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ; ନାରୀର ଭୂମିକା ବିନା ସଂସାରର କ୍ରିୟାଶୀଳତା ପ୍ରକାଶ ପାଏନା । ପୁରୁଷ ସମାଜ ଓ ସଂସାରର ଗୋଟିଏ ଅଂଗ, ମାତ୍ର ଅପର ଅଂଗଟି ନାରୀ । ଦୁଇଟିର ସୁପରିଚାଳନାରେ ଏକ ସୁସ୍ଥ ଓ ସମୃଦ୍ଧ ସମାଜ କିଂବା ପରିବାରର ସୃଷ୍ଟି । ତେଣୁ ସମାଜ ଗଠନ ପକ୍ଷରେ ନାରୀର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ପ୍ରାକୃତିକ ପରିବେଶ ଓ ପରିସ୍ଥିତି ମଣିଷର ଚରିତ୍ରକୁ ଆକାର ଦେଇଥିବା, ନାରୀ ସ୍ଥାନୀୟ ସଂସ୍କାର ଓ ସ୍ୱାଭାବିକ ଆଚରଣ ଦ୍ୱାରା ନିଜର ଦୃଷ୍ଟିକୋଣ ତଥା ମାନସିକତାକୁ ତିଆରି କରିଥାଏ । କଥାରେ ଯେମିତି କହନ୍ତି, ଦେଶକେ ଫାଙ୍କ୍, ନଈକେ ବାଙ୍କ୍—ସେମିତି ସ୍ଥାନ ଭେଦରେ ଆଚାର ଓ ବିଚାରର ବିଭେଦ ଦେଖାଯାଏ । ଭାରତ ଗୋଟିଏ ରାଷ୍ଟ୍ର ହେଲେ ବି ସବୁ ପ୍ରଦେଶର ନାରୀ ସମାନ ବେଶଭୂଷାରେ ନିଜକୁ ରୂପାୟିତ କରି ନଥାନ୍ତି; କିଂବା ସମାନ ଢାଞ୍ଚାରେ ନିଜକୁ ଚଳେଇ ନେଇ ନଥାନ୍ତି । ତେଣୁ ପ୍ରତ୍ୟେକ ପ୍ରଦେଶ ଓ ନାରୀ ସମାଜ ସ୍ୱକୀୟ, ସ୍ୱାତନ୍ତ୍ର୍ୟ ପାରଂପରିକ ମୂଲ୍ୟବୋଧ ନେଇ ପରିବର୍ତ୍ତିତ କାଳରେ ବି ଚଳି କରିବାକୁ ଉଦ୍ୟମ କରୁଛନ୍ତି ।

ହେଲେ ବି, ଭାରତୀୟ ନାରୀର ଆତ୍ମା ଏକ; ଆର୍ଯ୍ୟ ସଂସ୍କୃତି ଓ ପାରଂପରିକ ବିଶ୍ୱାସ ବୋଧକୁ ନେଇ ନାରୀ ଏବେବି ବଞ୍ଚିଛି । ତା' ମନର ନିଭୃତ ନିଳୟରେ ବଞ୍ଚି ରହିଛି ଗୋଟା କେତେ ଅପରିଚ୍ଛନ୍ନ ବିଶ୍ୱାସ ଯାହାକି ଏବେବି

ପ୍ରଗତିଶୀଳ ଯୁଗରେ ତାଙ୍କୁ ପ୍ରଗତିର ନିକଟବର୍ତ୍ତୀ କରିପାରୁନାହିଁ । ନାରୀ ମନର ହୀନମନ୍ୟତା ଓ ଉଦାର ପ୍ରବୃତ୍ତି, ସବୁ ସମସ୍ୟାର ଝଡ଼କୁ ମୁଣ୍ଡପାତି ସହି ନେବାର ଧୈର୍ଯ୍ୟ, ନିଜକୁ ଶୋଷି ଅନ୍ୟକୁ ପୋଷିବାର ମନୋବୃତ୍ତି ଓ ସର୍ବୋପରି ସାମାଜିକ ସୌଜନ୍ୟବୋଧ ଏବଂ ଧର୍ମଶୀଳତା ତଥା ଧର୍ମାନୁଗାମୀ ଚେତନା ନାରୀର ଅନ୍ତଃସ୍ଥଳରେ ଦୃଢ଼ ଆସନ ପାରି ରହିଛି । ନାରୀର ମୁକ୍ତି କାହିଁ ? ପୁରୁଷର ମନ ନିଜର ଦାବୀର ପରିପୂର୍ତ୍ତିତାରେ କୌଣସି ତ୍ରୁଟି ଦେଖିଲେ ଯେପରି ବିଦ୍ରୋହ କରି ବସେ ଏବଂ ତା' ନିକଟରେ ସଂଗ୍ରାମ ଆନ୍ଦୋଳନ ଯେପରି ସ୍ୱଭାବ ସହଜ, ନାରୀ ପକ୍ଷରେ ତାହା ସମ୍ପୂର୍ଣ୍ଣ ସାପେକ୍ଷ । ନାରୀ ପୁରୁଷଠାରୁ ବହୁ ପରିମାଣରେ ଶୃଙ୍ଖଳିତ । କୌଣସି ସିଦ୍ଧାନ୍ତରେ ଉପନୀତ ହେବା ପୂର୍ବରୁ ନାରୀ ବହୁବାର ଚିନ୍ତାକରି, ଯୁକ୍ତି ସପକ୍ଷରେ ନିଜକୁ ସନ୍ତୁଷ୍ଟ କରେ; ଅପରପକ୍ଷ ବିଚାର କରେ, ତା'ପରେ ସେ ମୁକ୍ତ ଜଗତକୁ ଓହ୍ଲାଏ । ଏଥିପାଇଁ ନାରୀର ସେଇ କୋମଳ ମନଟି ଯେ ଦାୟୀ ତା' ନୁହେଁ, ସମାଜର କଳନ୍ତ ନିୟମ ଓ ପୁରୁଷର ପ୍ରଭୁତ୍ୱ ନାରୀର ଏଇ ଶୃଙ୍ଖଳ ପାଇଁ ବହୁ ଅଂଶରେ ଦାୟୀ । ତେଣୁ ନାରୀ ତା'ର ସଂସାର , ଯାହାରେ ବହୁ ଦ୍ୱିଧାବୋଧ ଭିତରେ ଗତି କରେ । 'ହଁ' ଓ 'ନାଇଁ'ର ତୀବ୍ର ଦଂଶନ ତାକୁ ଅନିଶ୍ଚିତ କାତର କରେ । ଭାରତୀୟ ନାରୀପକ୍ଷେ ଏହା ଦ୍ୱିଗୁଣ ଅଧିକେ ସତ୍ୟ ।

ଓଡ଼ିଆ ନାରୀ ତା'ର ସ୍ୱକୀୟ ମୂଲ୍ୟବୋଧ ଭିତରେ ଥାଇ ବି ଏହାର ସଂକ୍ରମଣରୁ ନିବର୍ତ୍ତି ପାରିନାହିଁ । ଅନେକ ବିଚାର ଓ ଅନ୍ଧବିଚାର ଧାରଣା ତା'କୁ ପ୍ରଭାବିତ କରି ଆସିଛି । ସୁସ୍ଥ ଯୁକ୍ତି ସମର୍ଥିତ କୌଣସି ମାର୍ଗ ଠିକଣା କରିବା ତା' ପକ୍ଷରେ କଷ୍ଟକର ବୋଧ ହୋଇଛି । ଏ ଦିଗରେ ଓଡ଼ିଶାର ପ୍ରାକୃତିକ ଓ ଭୌଗୋଳିକ ପରିବେଶର ପ୍ରଭାବ ଓଡ଼ିଆ ରମଣୀର ସାଧାରଣ ଜୀବନକୁ ଏପରି ଆକାର ଦେଇଛି ଯେ ତାହା କୌଣସି ଏକ ସହଜ ମାର୍ଗରେ ଓ ନବୀନ ସିଦ୍ଧାନ୍ତରେ ଗତି କରିବାପାଇଁ ସୁଯୋଗ ଲାଭ କରିପାରୁ ନାହିଁ । ପରିସ୍ଥିତି ଓ ପରିବେଶରେ ପଡ଼ି ନାରୀ ତା'ର ମାନବାତ୍ମାକୁ ଦେବୀସୁଲଭ ଗୁଣାବଳୀରେ ଭୂଷିତ କରୁଛି ।

ବ୍ୟକ୍ତିସ୍ୱାର୍ଥ ହେଲେ ବି ଓଡ଼ିଆ ନାରୀର ଦୃଷ୍ଟିରେ ତା'ର ପତି, ପରମ ଈଶ୍ୱର । ଦୁର୍ବୃତ୍ତ ସ୍ୱାମୀର କାର୍ଯ୍ୟ କଳାପରେ ଅନୁତପ୍ତା ନାରୀ ବାରମ୍ବାର ମର୍ମ କାନ୍ଦଣା କାନ୍ଦେ, ଭାଗ୍ୟକୁ ନିନ୍ଦେ ସିନା କୌଣସି ଉପାୟ

ପାଣ୍ଠି ସେହି ବିଷ କୋଠରୀରୁ ନିଜକୁ ମୁକୁଳାଇ ପାରେନା । ତା' ସ୍ୱାମୀ ମଦ୍ୟପ, ନରହନ୍ତା ଏବଂ ସେ ସେହି ପରିବାରର କୁଳବଧୂ; ପ୍ରକାଶ୍ୟରେ ଓଡ଼ିଆ ନାରୀ ସ୍ୱୀକାର କରି ପାରେନା । ହୁଏତ ଅନ୍ୟ କେହି ଅଠା ନବୋଳି କହିବ ଯୁକ୍ତି ଓ ସତ୍ୟତା ନଥିଲେ ବି ତାକୁ ଅପରାଧୀ ପ୍ରମାଣିତ କରିପାରେ ଏବଂ ଅପରିଚିତର ଅପମାନକୁ ତା'ର ବଂଶ ମର୍ଯ୍ୟାଦା ଦୃଷ୍ଟିରୁ ଓ ପତିର ସମ୍ମାନ ଦୃଷ୍ଟିରୁ ବରଣ କରେ ପଛେ ଅନ୍ୟକୁ ନିନ୍ଦ ପାରେନା । ଓଡ଼ିଆ ନାରୀ ଅନୁଭବ କରେ, ଗୋପ ଦାଣ୍ଡେ ରହି ଦୁର୍ନାମ ପଛକେ ଶ୍ୟାମରେ କଳଂକ ନଲଗୁ । ଏଇ ଅନୁଭୂତି ପାଇଁ ନାରୀ କେବେ କ୍ଷମଣୀୟା ନୁହେଁ । ଏହା ତା'ର ଉଦାର ମନୋବୃତ୍ତି ହୋଇପାରେ, ପତିପ୍ରେମ ଓ ଗଭୀର ସହନଶୀଳତାର ସୂଚକ ହୋଇପାରେ; କିନ୍ତୁ ନିଷ୍କଳଙ୍କ ଥାଇ ଆପେ ଆପେ କଳଙ୍କ ବରଣ କରିବାର କୌଣସି ଯୁକ୍ତି ନାହିଁ । ଯେପରି ସୀତାଙ୍କ ଅନୁଭବ ଉଚ୍ଚାରଣ କରନ୍ତି :

> "ମୋ କର୍ମ ପାଇଁ ଦୋଷୀ ନୁହନ୍ତି ବିଧି
> କାନ୍ତ ତ ସ୍ୱଭାବେ ମୋ କରୁଣା ନିଧି ।" ୧

ଏହା ଆଦର୍ଶ ହୋଇପାରେ, କିନ୍ତୁ ବାସ୍ତବୋଚିତ ନୁହେଁ । ବାସ୍ତବତା ହିଁ ମଣିଷକୁ ଗଢ଼ିଥାଏ । ସେ ଦୃଷ୍ଟିରୁ ଦେଖିଲେ କଳଙ୍କକୁ ଦମନ କରିବାରେ ଓ ବ୍ୟଭିଚାରକୁ ହତ୍ୟା କରିବାରେ ଗୌରବ ଯେତେ ବେଶୀ, ସହିବାରେ ଗୌରବ ଖୁବ୍ କମ୍ । ଓଡ଼ିଆ ନାରୀ ସେ କ୍ଷେତ୍ରରେ ବିଦ୍ରୋହୀ ହେଉ ।

ସମାଜ ଓ ପରିବାର ପାଇଁ ସୃଜନାତ୍ମକ ପ୍ରକଳ୍ପ ଅନିବାର୍ଯ୍ୟ । ସ୍ୱାମୀର ଦୁରାଚାର ଓ ବିଚ୍ୟୁତିକୁ ଅନ୍ଧ ଭକ୍ତି ଭାବନାରେ ବଶୀଭୂତ ହୋଇ ଯଦି କାଳ କାଳକୁ ସହି ନିଆଯାଏ ତା' ହେଲେ ଭବିଷ୍ୟତର ସମାଜ ସମ୍ପୂର୍ଣ୍ଣ ରୂପେ କ୍ଲୀବ ହୋଇ ପଡ଼ିବ । ସାବିତ୍ରୀଙ୍କ ଆଦର୍ଶ ପ୍ରତିପାଦିତ ପତିପରାୟଣତା ହୁଏତ ଅନେକ ରକ୍ଷଣଧର୍ମୀ ସଂସ୍କାର ପୀଡ଼ିତ ମଙ୍ଗରାଜମାନଙ୍କୁ ମୁଗ୍‌ଧ କରିପାରେ, କିନ୍ତୁ ତା'ର ପରବର୍ତ୍ତୀ ପ୍ରସ୍ତ ଖୁବ୍ ଉତ୍ପୀଡ଼ିତ । ସେଇ ଉତ୍ପୀଡ଼ିତତାର ଆକାଂକ୍ଷା ନଥିଲେ ସୁଲୋଚନା ଦେବୀଙ୍କ ପକ୍ଷରେ ପତି ଚରିତ୍ର ସଂଶୋଧନ ପାଇଁ ଦୁର୍ଦ୍ଦାନ୍ତ ଦାନବୀ ମୂର୍ତ୍ତି ଧାରଣ କରିବାର ଆବଶ୍ୟକତା ନଥା'ନ୍ତା । ଚନ୍ଦ୍ରମଣି ପତ୍ନୀନାସୁକ ସ୍ତ୍ରୀର ଅନୁଶାସନରେ ପରିବର୍ତ୍ତିତ ମଣିଷ ରୂପେ ପରିଣତ ହେବା ପରିବାର ପାଇଁ ଯେପରି କାମ୍ୟ, ଓଡ଼ିଆ ଗୃହିଣୀ ପକ୍ଷରେ ପୁରୁଷମାନଙ୍କ ଦ୍ୱାରା ସଂଘଟିତ

---

୧ ତପସ୍ୱିନୀ—ଗଂଗାଧର ମେହେର ।

ହେଉଥିବା ପାଣ୍ଡବମାନଙ୍କ ଅଦ୍ଭୁତରୁ ଅମିତ ଶକ୍ତିରେ ଦମନ କରିବାର ସାହସ ଆଜିର ପରିବର୍ତ୍ତିତ ପରିସ୍ଥିତିରେ ମଧ୍ୟ ଠିକ୍ ସେହିପରି ସ୍ପୃହଣୀୟ ।

ନାରୀକୁ ଦାସତ୍ୱର ବନ୍ଧନ ଭିତରେ ବାନ୍ଧି ରଖିବାରେ ଯେଉଁ ଗତାନୁଗତିକ ପନ୍ଥା, ପୁରୁଷର ସହଗାମିନୀ ଓ ଅର୍ଦ୍ଧାଙ୍ଗିନୀ ରୂପେ ପୁରୁଷକୁ ହର୍ତ୍ତା, କର୍ତ୍ତା, ବିଧାତା ରୂପେ ବରି ନେବାର ଯେଉଁ ଅଭ୍ୟାସ, ତା'ର ପରିବର୍ତ୍ତନ ବର୍ତ୍ତମାନ ଆବଶ୍ୟକ । ଯିଏ ସମାଜ ଗଢ଼ିଛି, ପୁରୁଷ ଭଳି ସେ ନାରୀକୁ ସମାଜରେ କି ଆସନ ବା ଦେଇଛି ? 'ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି'—ସ୍ତ୍ରୀର ସ୍ୱାତନ୍ତ୍ର୍ୟ ନାହିଁ—ଏ ପ୍ରକାର ଚିନ୍ତା ସମ୍ପୂର୍ଣ୍ଣ ଏକ ତରଫା । ନାରୀ ପୁରୁଷର ଅନୁଗତ ହେଲେ ତାକୁ ସାଧ୍ୱୀ, ସତୀ ଆଦି ବିଶେଷଣରେ ବିଭୂଷିତ କରାଯାଏ; କିନ୍ତୁ ଦୁଃଖର କଥା, ପୁରୁଷ ଯଦି ନାରୀର ଅନୁଗତ ହୁଏ, ତେବେ ତାକୁ ସ୍ତ୍ରୈଣ ରୂପେ ଆଖ୍ୟାୟିତ କରାଯାଏ । ଏ ପ୍ରକାର ଚିନ୍ତାର ପରିବର୍ତ୍ତନ ଆବଶ୍ୟକ । ଅନ୍ତରର ପରିବର୍ତ୍ତନ ନହେଲେ ବାହାରର ପରିବର୍ତ୍ତନ ବୃଥା । ଏଥିପାଇଁ ନାରୀ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରୁ । ସେ ନିଜକୁ ମୁକ୍ତ କରୁ ପାରମ୍ପରିକ ଚିନ୍ତା ଜଗତରୁ, କ୍ରାନ୍ତିକାରୀ ଚିନ୍ତନ ଓ ନିଜ ବିଦ୍ରୋହୀ ମନକୁ ସବଳ କରି । ଏ ବିଦ୍ରୋହ ଯଦି ଓଡ଼ିଆ ନାରୀ ମନରେ ସଞ୍ଚାରିତ ନହୁଏ, ତାକୁ ଯେତେ ଶୃଙ୍ଖଳ ମୁକ୍ତ କଲେ ମଧ୍ୟ ସେମାନେ ତାଙ୍କର ସ୍ୱାଧୀନତା ରକ୍ଷା କରିବାକୁ ପ୍ରୟାସୀ ହୋଇ ପାରିବେ ନାହିଁ । କୁହାଅଛି, ଥରେ ନିଗ୍ରୋମାନଙ୍କୁ ଦାସତ୍ୱ ବନ୍ଧନରୁ ମୁକ୍ତ ଦେଲାପରେ ବି ସେମାନେ ପୂର୍ବାବସ୍ଥାକୁ ଫେରି ଯିବାକୁ ବ୍ୟାକୁଳ ହୋଇ ପଡ଼ିଥିଲେ । କାରଣ ଅଭ୍ୟାସ ବଶତଃ ଏବର ଅନେକ ମେଇ ଦାସତ୍ୱର ବନ୍ଧନକୁ ଶ୍ରେୟ ମନେ କରୁଛନ୍ତି ପଛକେ ତହିଁରୁ ମୁକ୍ତି ପାଇଁ ତତ୍ପରତା ଅଦୌ ପ୍ରକାଶ କରୁନାହାନ୍ତି । ସେମାନଙ୍କ ଧାରଣାରେ ଦାସତ୍ୱ ଓ ଜଡ଼ତା ମଧ୍ୟରେ ଗୋଟିଏ ଯୁକ୍ତିହୀନ ଓ ପ୍ରୟାସହୀନ ଆରାମ ଅଛି । ସ୍ୱାଧୀନ ଭାବରେ ନିଜର ଆତ୍ମ ସମ୍ମାନ ଅକ୍ଷୁର୍ଣ୍ଣ ରଖି ଚଳେଇ ନେବାକୁ ସମସ୍ତେ ଅସମ୍ମତ ।

ନାରୀ ଅନେକଙ୍କ ଧାରଣାରେ ତ୍ୟାଗ ଓ ପବିତ୍ରତାର ବିଗ୍ରହ । ତ୍ୟାଗର ଅର୍ଥ ଆତ୍ମ ବଳୟ ନୁହେଁ । କୁସଂସ୍କାର ପ୍ରତି ନିଷ୍ଠା ମଧ୍ୟ 'ପବିତ୍ରତାର ସୂଚକ ନୁହେଁ । ଆମ ସମାଜରେ ଏବଂ ଶ୍ରେଷ୍ଠ ବଡ ଓଡ଼ିଆ ପରିବାରରେ ଅନେକ ଗୁଡ଼ିଏ ଭ୍ରମାତ୍ମକ ଧାରଣା ଓ ଭୁଲ ସୂତ୍ର ପ୍ରଚଳିତ । ମନେ କରାଯାଉ, ପ୍ରତ୍ୟେକଙ୍କର ବିଶ୍ୱାସରେ ଦୁଇ ଆଉ ଦୁଇ ମିଶି ଗ୍ୟାରି ହେଲ ଭଳି,

ନିର୍ବିବାଦରେ ଆମେ ଅନେକଗୁଡ଼ିଏ ଭୁଲ ସୂତ୍ର ଗ୍ରହଣ କରି ନେଇଥାଉଁ । ଅନେକେ ଭାବନ୍ତି ପୁରୁଷ ଶ୍ରେଷ୍ଠ ପ୍ରାଣୀ, ସ୍ତ୍ରୀ ନିକୃଷ୍ଟ । ପୁରୁଷ କଠୋର, ସ୍ତ୍ରୀ କୋମଳ, ପୁରୁଷ ଉଦାର ସ୍ତ୍ରୀ ସଙ୍କୀର୍ଣ୍ଣମନା । ପୁରୁଷ ସ୍ତ୍ରୀ ବିନା ଚଳିଯିବ, ସ୍ତ୍ରୀ ପୁରୁଷ ବିନା ଚଳି ପାରିବ ନାହିଁ । ସ୍ତ୍ରୀମାନେ କଳି ପ୍ରିୟ, ଅଶ୍ରୁ ତାଙ୍କର ଅସ୍ତ୍ର, ପୁରୁଷ ଖୁବ୍ ସରଳ । ଏ ପ୍ରକାର ଆହୁରି ଅନେକ ବଦ୍ଧମୂଳ ଧାରଣା ଆମ ସମାଜରେ ପ୍ରଚଳିତ । ସେଇ କାରଣରୁ ସ୍ତ୍ରୀ ପୁରୁଷ ମଧ୍ୟରେ ଅନେକ ପ୍ରଭେଦ ସୃଷ୍ଟି କରି ହୋଇଛି । କିନ୍ତୁ ଜଣେ ବିଚାରଶୀଳ ମନ ଦେଇ ଚିନ୍ତାକଲେ ଜାଣି ପାରିବ ଯେ, ଉଭୟ ପ୍ରାଣୀ ଭିତରେ କିଛି ପ୍ରଭେଦ ହିଁ ନାହିଁ । କାରଣ ପୁରୁଷ ଯେପରି ସ୍ତ୍ରୀ ଗର୍ଭରୁ ଜନ୍ମ ଗ୍ରହଣକରେ ସେହିପରି ସ୍ତ୍ରୀ ପିତା ବିନା ଜନ୍ମ ଗ୍ରହଣ କରିପାରେ ନାହିଁ । ପ୍ରତ୍ୟେକ ପୁରୁଷ ମଧ୍ୟରେ ସ୍ତ୍ରୀ ଓ ପ୍ରତ୍ୟେକ ସ୍ତ୍ରୀ ମଧ୍ୟରେ ପୁରୁଷ ଅଦୃଶ୍ୟ ଭାବରେ ରହିଥା'ନ୍ତି । ଗମ୍ଭୀର ଭାବରେ ପରୀକ୍ଷା କଲେ ଜଣାଯାଏ, ଏପରି ଜଣେ ସୁଦ୍ଧା ପୁରୁଷ ନାହାନ୍ତି ଯାହାଠାରେ ତାଙ୍କ ମା'ଙ୍କର ରୂପ ଓ ଗୁଣର ଚିହ୍ନ କିଛି ମାତ୍ର ନାହିଁ । ସେହିପରି ଏପରି କୌଣସି ସ୍ତ୍ରୀ ନାହିଁ ଯାହାଠାରେ ତାଙ୍କ ବାପାଙ୍କର ଗୁଣାବଳୀର ଚିହ୍ନ ଆଦୌ ନାହିଁ । ତେଣୁ ଭିନ୍ନ ଭିନ୍ନ ଦୃଷ୍ଟି କୋଣରୁ ସ୍ତ୍ରୀ ପୁରୁଷଙ୍କୁ ବାଛିବାରେ କୌଣସି ଯୁକ୍ତି ନାହିଁ ।

ବର୍ତ୍ତମାନ ବିବର୍ତ୍ତିତ ପୃଥିବୀ ଅନେକଗୁଡ଼ିଏ ନୂତନ ମୂଲ୍ୟବୋଧକୁ ମାନବର କଲ୍ୟାଣ ଦୃଷ୍ଟିରୁ ପାରିବାରିକ ତଥା ସାମାଜିକ ଜୀବନରେ ଗ୍ରହଣ କରୁଛି । ନାରୀକୁ ଶୃଙ୍ଖଳରୁ ମୁକ୍ତ ଦେବାପାଇଁ, ସ୍ୱାଧୀନ କରିବାପାଇଁ କୁସଂସ୍କାରରୁ ଦୂରେଇ ଆଣିବା ପାଇଁ ସବୁ ସ୍ତରର ଚିନ୍ତାବିତ୍‌ମାନେ ଚେଷ୍ଟା କରୁଛନ୍ତି । ଓଡ଼ିଆ ନାରୀ ସେହି ଆନ୍ଦୋଳନର ସ୍ରୁଅ ମଧ୍ୟରେ ନିଜକୁ ହଜାଇ ଦେଇଛି । ଚାରି ଦାବୀ ଓ ଇସ୍ତାହାର ଅନ୍ୟାନ୍ୟ ନାରୀମାନଙ୍କର ସ୍ଲୋଗାନ ଭଳି ପ୍ରକାଶ ପାଉଛି । କିନ୍ତୁ ଏସବୁ ଦାବୀ ଯେତେ ଦରକାରୀ ମନେ ହେଉଥିଲେବି ଚୂଡ଼ାନ୍ତ ନୁହେଁ । ଦେଖାଯାଉଛି ନାରୀ ବେଶୀ ପରିମାଣରେ ମୁକ୍ତିକାମୀ ହେବା ଫଳରେ ନାରୀତ୍ୱରୁ ମୁକ୍ତ ହେବାକୁ ବସିଛି । ନାରୀ ଯେ ନାରୀ ଏବଂ ନାରୀ ବୋଲି ତା'ର ଯେ ଗୋଟିଏ ବିଶିଷ୍ଟ ସ୍ଥାନ ଅଛି, ଏ ଅନୁଭୂତିରୁ ସେ ଦୂରେଇ ଯାଉଛି; ଏହା ବଡ଼ କ୍ଷୋଭର ବିଷୟ । ନାରୀକୁ ପୁରୁଷ ସହିତ ପ୍ରତିଯୋଗିତା କରିବାକୁ ବାଧ୍ୟ କରାଯାଉଛି, କିନ୍ତୁ ଏ ପ୍ରକାର ପ୍ରତିଯୋଗିତା ମାନବ କଲ୍ୟାଣ ଦୃଷ୍ଟିରୁ ହିତକର ନୁହେଁ । କାରଣ ନାରୀ ଯଦି ପୁରୁଷ ସହିତ ପ୍ରତିଯୋଗିନୀ ହୁଏ ତେବେ ସେ ତାହାର ନିଜସ୍ୱ ଦାନ ଦେଇ ମାନବ

ଜାତିକୁ ସମୃଦ୍ଧ କରିପାରିବ ନାହିଁ । ଜନନୀ ହିସାବରେ ତା'ର ଯେ ବିଶିଷ୍ଟ ସ୍ଥାନ ଅଛି ତାହା ଅପୂର୍ଣ୍ଣ ରହିଯିବ । ତେଣୁ ନାରୀସ୍ୱାତନ୍ତ୍ର୍ୟ ବାଦୀମାନେ ନାରୀକୁ ପୁରୁଷ ସହିତ ସମାନ ହେବାକୁ ପ୍ରେରଣା ଦେବା ଅପେକ୍ଷା ନାରୀକୁ ପୁରୁଷର ବିପରୀତ ହେବାକୁ ଆହ୍ୱାନ ଦେବା ବରଂ ଶ୍ରେୟସ୍କର । ନାରୀ, ନାରୀ ଜାତିର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପ୍ରତି ଆଗ୍ରହୀ ହେବା ପରିବର୍ତ୍ତେ ଜନନୀ ଜାତିର ଅଧିକାର ପ୍ରତିଷ୍ଠା ପାଇଁ ତତ୍ପର ହେବା ବାଞ୍ଛନୀୟ ।

ଜଣେ ରୁଚିଶୀଳା, ଶିକ୍ଷିତା ଓ ଦୂରଦୃଷ୍ଟି ସମ୍ପନ୍ନା ଜନନୀ ତା'ର ପରିବାରକୁ ଯେପରି ଗଢ଼ିପାରେ, ସାଧାରଣ ଜନନୀର କାର୍ଯ୍ୟକଳାପରେ ଅନେକ ତ୍ରୁଟି, ବିଚ୍ୟୁତି ରହିଯାଇ ଥାଏ । ତେଣୁ ପରିବର୍ତ୍ତିତ ଜଗତରେ ଓଡ଼ିଆ ଗୃହିଣୀ ରୁଚି ଓ ଶିକ୍ଷାର ମହତ୍ତ୍ୱକୁ ଉପଲବ୍ଧି କରିବା ଉଚିତ । ନାରୀ ଶିକ୍ଷା ଯେ ଜୀବିକାର୍ଜନ ପାଇଁ ଉଦ୍ଦିଷ୍ଟ ଏପରି ମନୋଭାବ ପୋଷଣ କରିବା ଉଚିତ ନୁହେଁ । ଶିକ୍ଷିତା ନାରୀ ଘରେ ଥାଉ କି ବାହାରେ ଥାଉ ଅନ୍ତତଃ କୁସଂସ୍କାର ପୀଡ଼ିତ ପୂର୍ବକାଳୀନ କୌଣସି ନାରୀର ରୁଚିହୀନ ଅପକର୍ମକୁ ଯେ ପ୍ରଶ୍ରୟ ଦିଏନା ଏକଥା ସତ, ସନ୍ତାନ ସନ୍ତତିମାନଙ୍କୁ ଯୁଗ ଧର୍ମରେ ପରିପୁଷ୍ଟକରି ଗଢ଼ି ତୋଳିବା ପାଇଁ ପଦକ୍ଷେପ ନେଇ ଥାଏ । ଅନେକ ସମୟରେ ତା'ର ତ୍ରୁଟି ଯେ ନ ଘଟେ ତା' ନୁହେଁ । ମନେକରିଯାଉ କୁମାରୀ କନ୍ୟାମାନଙ୍କୁ ପୋଷାକ ପକ୍ଷରେ ନୂଆ ଫେସନ ସାମଗ୍ରୀ ଯୋଗାଇବାକୁ ତା'ର ଅନିଚ୍ଛା ସତ୍ତ୍ୱେ ସେ ବାଧ୍ୟ ହୁଏ । ଚପା ପୋଷାକ ଯଦିଓ ରୁଚି ହୀନତା ଓ ନଗ୍ନତାକୁ ପ୍ରକାଶ କରୁଛି ତଥାପି ସେଥିରୁ ସେ ମୁକୁଳି ପାରେନା । ଆଜି ଅନେକାଂଶରେ ପ୍ରଗତି ନାମରେ ସ୍ୱେଚ୍ଛାଚାରକୁ ପ୍ରଶ୍ରୟ ଦିଆ ଯାଇଛି । କଲିକତା ତଥା ମାନ୍ଦ୍ରାଜ ବନ୍ଦର ଅବଶ୍ୟ ଏବେକୁ ପାରାଦ୍ୱୀପ ବାଟେ ଫେସନ ଓ ଦୃଷ୍ଟି ଭଙ୍ଗୀ ଯେମିତି ମାଡ଼ି ଆସୁଛି ତାକୁ ଓଡ଼ିଆ ରମଣୀ ଅମୃତ ତୁଲ୍ୟ ପାନ କରି ଅମର ହେବାପାଇଁ ଉତ୍କଣ୍ଠିତା । କିନ୍ତୁ ବୃହତ୍ତର ସମାଜ କଲ୍ୟାଣ ଦୃଷ୍ଟିରୁ ଓଡ଼ିଆ ନାରୀ ତା'ର ନିଜ ଜଗତ ଭିତରେ ଥାଇ ଅପଚୟ ଓ ଅବକ୍ଷୟକୁ ରୋଧ କରୁ, ତା'ର ପାରଂପରିକ ସଂସ୍କାରଗୁଡ଼ିକ ନୂତନ ଭାବେ ପ୍ରଯୁକ୍ତ ହୋଇ ଏକ ଶାଳୀନତା ସମ୍ପନ୍ନ ଓ ରୁଚି ସମୃଦ୍ଧ ପରିବାର ଗଢ଼ୁ । ପରିବର୍ତ୍ତନର ଅର୍ଥ ନବୁଝି ଝାସ ଦେବାରୁ ଦୂରରେ ରହି, ନିଜେ ଯାହା, ତଦନୁରୂପ ନିଜକୁ ଆଗେଇନେଲେ ଓଡ଼ିଆ ନାରୀ ତା'ର ସଫଳ ସଂସାର ଗଢ଼ି ପାରିବ ।

---

# ନାମସୂଚୀ : ଗ୍ରନ୍ଥକାର ଓ ଗ୍ରନ୍ଥ

## INDEX OF NAMES OF AUTHORS AND WORKS

### ଗ୍ରନ୍ଥକାର :

ଗ୍ରନ୍ଥ :